# ରାଉରକେଲାର ରାତ୍ରି

ଲେଖକ :

ଶ୍ରୀ ଭାଗୀରଥି ନେପାକ, ବି. ଏ. (ଅନର୍ସ)

ପ୍ରକାଶକ :

କଟକ-୨

ପ୍ରଥମ ପ୍ରକାଶ :

ମାର୍ଚ୍ଚ-୧୯୭୨

ପ୍ରକାଶକ :

ଶ୍ରୀ ହରିହର ପ୍ରଧାନ [illegible]

ଉତ୍କଳ ବାଣୀମନ୍ଦିର

ବିଶ୍ୱନାଥ ଲେନ୍, କଟକ-୨

ମୁଦ୍ରାକର :

ଶ୍ରୀ ଅବନୀନ୍ଦ୍ର ନାଥ ଦାଶ

ଶତଦଳ ପ୍ରେସ୍, କଟକ-୧

ମୂଲ୍ୟ

**ଏକଟଙ୍କା ପଞ୍ଚସ୍ତରୀ ନୂଆପଇସା**

ଟ ୧.୭୫ ନୂ: ପ:

କିଶୋର ନନା;

ସେ ଦିନ ବାପା ଓ ମୁଁ ରାଉରକେଲା ଯାଇଥିଲୁଁ । ତୁମେ ଆଗ୍ରହରେ ଆମକୁ ପୁରୁଣା ଓ ନୂଆ ରାଉରକେଲା ଦେଖାଇଲ। ପୁରୁଣା ଓ ନୂଆ ଲୋକଙ୍କୁ ଚିହ୍ନାଇଦେଲ । ବସାରେ ପହଞ୍ଚି ବିଶ୍ରାମ ନେଲାବେଳେ କହିଲ—ଭଗୀରଥି ! ଏ ରାଉରକେଲା ଦେଖି ତୋର କଣ ଧାରଣା ହେଲା କହିଲୁ ? ମୁଁ କହିଲି—ରାଉରକେଲା ବଦଳି ଯାଉଛି, ଆଜି ଏହି ନୂଆ ରାଉରକେଲା ବିଷୟରେ ବହି ଲେଖିବାକୁ ଯେତେବେଳେ ଆଗ୍ରହୀ ହେଲି, ତୁମେ ଆନନ୍ଦରେ ସମସ୍ତ ତଥ୍ୟ ଜଣାଇ ଦେଲ । ସବୁବେଳେ ପଚାରୁ, ବହି ଲେଖା ସରିଛି ? ଏ ବହିଟି ଆଜି ତୁମହାତକୁ ବଢ଼ାଇ ଦେଲାବେଳେ ମୁଁ ପ୍ରକୃତରେ ଭାରି ଖୁସି । ତୁମ ଓ ମୋ' ଭିତରେ ଯେଉଁ କଥାବାର୍ତ୍ତା ହୋଇଥିଲା, ସେ ସବୁ ପଢି ତୁମେ ବି ଖୁସି ହେବ ବୋଲି ଆଶାକରେ । ଆଜିର ରାଉରକେଲା ଆସନ୍ତା କାଲିକି ପୁଣି ହୁଏତ ବଦଳିଯାଇପାରେ । ଏ ବହିରେ ଯାହା ରଖିଗଲି ସେ ହୁଏତ ଯଥେଷ୍ଟ ହୋଇ ନପାରେ । ତଥାପି ମୁଁ ଖୁସି—

ଶ୍ରୀକ୍ଷେତ୍ର
ଗୋବିନ୍ଦ ଦ୍ୱାଦଶୀ
୨୭-୨-୭୧

ତୁମର
—ସାନଭାଇ—

ପୁସ୍ତକ ବର୍ଣ୍ଣିତ ବିଷୟବସ୍ତୁ ଓ ଚରିତ୍ରଗୁଡ଼ିକ ସମ୍ପୂର୍ଣ୍ଣ କାଳ୍ପନିକ । ଏହା କୌଣସି ଦେଶ, ଜାତି ବା ବ୍ୟକ୍ତିଙ୍କୁ ଆକ୍ଷେପ କରାଯାଇ ନାହିଁ ।

—ଲେଖକ—

## ଏଇ ଲେଖକଙ୍କର ପ୍ରକାଶିତ

୧ । ଜୀବନତୃଷ୍ଣା (କବିତା ସଂକଳନ)

୨ । ମଉଳା ମନର ମୁକୁଳା କଥା (ସାମାଜିକ ଉପନ୍ୟାସ)

୩ । ତରୁଣୀର ମନ „

୪ । ବିଭ୍ରାନ୍ତ „

୫ । ସୁଜାତାର ସ୍ୱପ୍ନ „

## ପ୍ରକାଶ ଅପେକ୍ଷାରେ

(୧) ମେଘାସନର ଝଡ଼ (ଉପନ୍ୟାସ)

(୨) ଶୁଭ ବିବାହ „

(୩) ସନ୍ତାନର ମାୟା „

ଗୁରୁଆ ଓରାଂ ଜେଲ ଦରଜା ମୁହଁରୁ କୋଟିଏ ଯୁଗର ଉଲ୍ଲାସ ନେଇ ପାଦ ବଢ଼ାଇଲା । ଜେଲ କର୍ମଚାରୀଙ୍କ ନିର୍ଦ୍ଦେଶରେ ସିପାହୀ ଜଣକ ପୁଣି ଥରେ ଜେଲ ଫାଟକ ପକାଇ ଦେଲେ । ଗୁରୁଆ ଓରାଂର ପଛରେ ପଡ଼ିରହିଲା ଦୀର୍ଘ ତିନିବର୍ଷର ନୀରବ ସାଥୀ ସମ୍ବଲପୁର ଜେଲ—ଜେଲର ବିଶାଳକାୟ କୋଠରୀ, ମେଘନାଦ ପାଚେରୀ ଆଉ ସରସ ସବୁଜ ବଗିଚା ।

ଜେଲ ଅଗଣାରୁ ଜୁକୁ ଜୁକୁ କରି ଅନାଇଁ ରହିଥିଲେ ଜେଲସାଥି ଗଦାଧର, ବିନାୟକ, ରଘୁ ପ୍ରଭୃତି ଜେଲ ଦଣ୍ଡଭୋଗୀ । ଅଳ୍ପଦିନ ଭିତରେ ଅନେକ ଆନ୍ତରିକ ଜମି ଯାଇଥିଲା । ପରସ୍ପର ପରସ୍ପରକୁ ଭଲପାଇ ବସିଥିଲେ—ଅନେକ ସୁଖ ଦୁଃଖର ଆଲୋଚନା ଭିତରେ ସୁଦୀର୍ଘ କ୍ଲାନ୍ତିକର ରାତି କଟିଯାଏ —କଥା ତଥାପି ଛିଣ୍ଡେନାହିଁ—ବିଶ୍ରାମ ସମୟରେ ଆଉ ଅଧିକର ପୁନରାବୃତ୍ତି ହୁଏ । ମନ ଭିତରେ ଆଗ୍ରହ, ଆଖି କୋଣରେ ଉତ୍ସାହ ଭରି ସେମାନେ ସରଳ ସାଧାରଣ ମଣିଷ ଭଳି କଥାବାର୍ତ୍ତା କରନ୍ତି —ତାହାରି ଭିତରେ ବେଳେବେଳେ ବିଗତ ଜୀବନର ତିକ୍ତ ଆଲୋଚନା ମୁଣ୍ଡଟେକେ । ଆଡ଼େଇ ଦେବାକୁ ଯେତେ ଚେଷ୍ଟା କଲେ ବି ଅପଶାନ୍ତିଏ ଭିତରେ ପଶେ । ସେହି ଦୁର୍ବଳ, ଦୁର୍ନିବାର ମୁହୂର୍ତ୍ତିପାଇଁ ମନସ୍ତାପରେ ଛାତି ଫାଟିଯାଏ । ଯିଏ ନିର୍ଦ୍ଦୋଷୀ, ନିୟମ କାନୁନର ଅନ୍ଧ ବୁଝାମଣା ଉପରେ ଟିପ୍ପଣୀ ଦିଏ ।

ଗଦାଧର, ଝନାସ୍ପୁଙ୍କ ଅପଲକ ଆଖିରେ ଅନାଇ ଥିଲେ ଗୃରୁଆଁ ଓରାଂଙ୍କୁ । କାନୁନର ଶୀକାର ହୋଇ ବ କାହାକୁ ଦୋଷ ଦେଇ ନ ଥିଲା । କିନ୍ତୁ ଦଣ୍ଡକଥା ମନେ ପଡ଼ିଲେ ସଜଳ ଆଖି କୋଣାକାରେ ତାର ପ୍ରତିବାଦର କଠୋର ଶୈଳୀ ମଥା ଟେକେ; ମୁହଁର ସ୍ୱାଭାବିକ ରଙ୍ଗ ବଦଳି ଯାଇ ଲାଲ ଜର ଜର ଦିଶେ । ନାକପୁଡ଼ା ଫୁଲି ଫୁଲି ଉଠେ—ଆଉ ତାହାର ଭିତରୁ ବହେ ପ୍ରତି-ହିଂସାର ଦୀର୍ଘ ନିଃଶ୍ୱାସ । ସେହି ନିଶ୍ୱାସ ଅତ୍ୟନ୍ତ ପ୍ରଖର ଆଉ ଉତ୍ତପ୍ତ । କଥାର ମୋଡ଼ ବଦଳିଗଲେ—ସେ ରଙ୍ଗ ବଦଳି ଯାଏ । ଅମାପ୍ତିଙ୍କ ଗୃରୁଆ ଓରାଂ ପୁଣି ଥରେ ହସି ହସି କଥା କହେ । ବିପଦ ଆପଦକୁ ଆଗୁଆ ହୋଇ ଦେହ ମୁଣ୍ଡ ପତାଏ । ସମସ୍ତେ ତାକୁ ସ୍ନେହ କରନ୍ତି—ସେହି ସ୍ନେହ ଭିତରେ ଶ୍ରଦ୍ଧା ଓ ଭକ୍ତିର ସ୍ୱାକ୍ଷର ଥାଏ । ଗୃରୁଆ ଓରାଂ ଆଜି ମୁକ୍ତିପାଇ ଚାଲିଗଲା । ଜେଲ ଭିତରଟା ନିଘୁଞ୍ଚିଆ ଲାଗୁଛି—ଜଣାପଡୁଛି ସତେ ଯେମିତି ଜେଲ ଭିତରର ଗୋଟିଏ ପ୍ରଧାନ ଅଙ୍ଗ ଅକାମୀ ହୋଇଗଲା । ଗୃରୁଆ ଓରାଂ ସୁଖୀ ହେଉ ! ଭଗବାନ ତାର ସହାୟ ହୁଅନ୍ତୁ ।

ଗୃରୁଆ ଓରାଂ ଦୀର୍ଘ ଗୃଶବର୍ଷ ପରେ ସ୍ୱାଧୀନ ପୃଥିବୀର ଚଉ-ହଦିକୁ ଚାହିଁଲା । ଖୋଲା ଛୁନ ଛୁନ ପବନ, ମନ ଉଲୁସିଆ କିରଣକୁ ମନଭରି ଅନୁଭବ କରିନେଲା । ରାସ୍ତା ଉପରର ଚିକଣିଆ ବାଲି, କଅଁଳ ଦୁବଘାସ ତାକୁ ଅଶେଷ ଆନନ୍ଦ ଦେଲେ । ରାସ୍ତା ଉପରେ ଅସଂଖ୍ୟ ସ୍ୱାଧୀନ ମାନବ—ବିଭିନ୍ନ ଆଶା ଓ ଅଭିଳାଷ ନେଇ ପାଦ ପକାଉଛନ୍ତି । ସେ ମଧ୍ୟ ସେହି ସର୍ବସାଧାରଣ ରାଜମାର୍ଗ ଉପରେ ସ୍ୱାଧୀନ ମଣିଷ ଭାବେ ଚାଲିବାର ଅଧିକାର ପାଉଛି । ମନ ତା'ର କୁରୁଳି କୁରୁଳି ହସୁଥିଲା ।

ଗୃଶ ବର୍ଷ ! ସୁଦୀର୍ଘ ଗୃଶବର୍ଷ !! ଗୃରୁଆ ଓରାଂ ଆଙ୍ଗୁଠି ପବରେ ଥରକୁ ଥର ଗଣିବାରେ ଲାଗିଲା । ଗୃଶପାଞ୍ଚ ବର୍ଷର ବ୍ୟବଧାନ ପରେ ସେ ଘରକୁ ଫେରୁଛି ।

ଘର ! ସରସ ସୁନ୍ଦର ଘର ! ବଚିଙ୍ଗିର ବଡଲୋକ, ବନ୍ଧୁଙ୍କ ଆଖିଡୋଳା ସେଇତ ନଜର କାଢେ । ବିମୁଗ୍ଧ ହୋଇ ଅନେଇ ଥାଏ ତାର ମୁଖମଣ୍ଡଳକୁ । ଆଖିରେ ଆଖିରେ କଥାଭାଷା କରନ୍ତି —ଦୁନିଆର ସମସ୍ତ ଦୁଃଖ, ଅତ୍ୟାଚାରକୁ ସାଙ୍ଗ ହୋଇ ଗୃହେଁଟି ହାତ, ଦୁଇଟି ମୁଠରେ ଆଡ଼େଇ ଦିଅନ୍ତି—ପ୍ରଖର ଗ୍ରୀଷ୍ମ; ପ୍ରଚଣ୍ଡ ଶୀତ ଓ ପ୍ରଳୟଙ୍କରୀ ବର୍ଷା ତାଙ୍କ ସଂସାରକୁ ଅଟକାଇ ଦେବାର ସାହସ କରନି—ତାଙ୍କର ଅତି ଶ୍ରେଷ୍ଠ ସୁନ୍ଦର ସଂସାର, ଅନେକ ହସ, ଅନେକ ଖେଳରେ ଭରା ! ତାର ସଂସାର ଆଜି ତାର ଜୀବନରେ ବଚିଙ୍ଗିର ଦାନ ଅତୀବ ଲୋଭନୀୟ ।

ଆଉ ତାର ସନ୍ତାନ ? ଗୁଲବ ଆଉ ଶ୍ରେଷ୍ଠ ପ୍ରିୟ ଦୁଲସୀ । ତାଙ୍କର ଦୀପ୍ତିମନ୍ତ ମୁଖମଣ୍ଡଳରେ ଆନନ୍ଦର ବନ୍ୟା ଛୁଟେ । ତାଙ୍କର ମାଧ୍ୟମରେ ସେ ନିଜ ଜୀବନ ଯୌବନର ସାର୍ଥକତା ଅନୁଭବ କରେ । ତାଙ୍କର ଚଳଚଞ୍ଚଳ ଗତିବିଧି ପ୍ରତି ଦୃଷ୍ଟି ଦେଲେ ମନ ଚଞ୍ଚଳ ହୋଇଉଠେ ।

ଗୁରୁଆ ଓରାଂର ପାଦର ଗତି ଚଞ୍ଚଳ ହୋଇ ଉଠିଲା— ପାଦର ଗତିଠାରୁ ମନର ଗତି ଆହୁରି ପ୍ରଖର ହୋଇ ଉଠୁଥାଏ । ଆଖି ଆଗରେ ଅନେକ କଥା ଅନେକ ଘଟଣାର ପୁସ୍ଥାଚନ । ଗାଁର ପ୍ରତ୍ୟେକ ଲୋକଙ୍କର ହସିଲା ମୁହଁକୁ ମନେ ପକାଉଥାଏ । ଗାଁ ଛାଡ଼ିବାର ଅନେକ ଦିନ ହୋଇଗଲାଣି । ପରିଚିତ ଆତ୍ମୀୟସ୍ୱଜନ ବୋଧହୁଏ ତା'କଥା ଭୁଲି ଯିବେଣି । ରାଉରକେଲାର ଅତୀତର ଆଉ ସହସ୍ର ଘଟଣାପରି ତା'ର ଉପସ୍ଥିତି ଗତିଶୀଳ ଘଟଣାଟିଏ ହୋଇ ଯାଇଥିବ ।

କିନ୍ତୁ ବଶିଙ୍ଗି ? ତାର ଅତି ଆପଣାର ବଶିଙ୍ଗି କଣ ତାକୁ ଭୁଲି ଯାଇଥିବ ? ଆଖିରେ ଆଶାର ଜାଗର ଜାଳି ସେ ହୁଏତ ପ୍ରତିଦିନ ଅପେକ୍ଷା କରୁଥିବ ।

ଆଃ ! ବରଗିଙ୍କ ତା’ର । ସିଏ ବସନ୍ତର ମଳୟଠାରୁ ମଧୁର । ପଦ୍ମର ପାଖୁଡ଼ାଠାରୁ କୋମଳ ଅଙ୍ଗ ସେବତୀର ସୌରଭଠାରୁ ସରସ । ଘନକୃଷ୍ଣ କେଶରାଶିରେ ସୁଷମାର ତରଙ୍ଗ ଖେଳେ—ଆନନ୍ଦ ଢଳଢ଼ଳ ଆଖିରେ ତାର ଉଚ୍ଛଳ ଯୌବନ କଥା କହେ—ବନ୍ଧୁଲା ବରଗିର ବଲେଲ ଗୃହାଣୀରେ କେତେ ଭାବ, କେତେ ରଙ୍ଗ । ଗଲେ ସେ ଆନନ୍ଦରେ କୁରୁଳି ଉଠିବ । କଣ କହି ସ୍ୱାଗତ କରିବ ତାକୁ ?

ଗୁରୁଆ ଓରାଂ ହୃନେଲ୍ କଳ୍ପନାରେ ଅଭିଭୂତ ଥିଲା । ଆନନ୍ଦ ମୁଖରିତ ମନ ତାର ଅଜଣା ଭବିଷ୍ୟତକୁ ସ୍ୱାଗତ କରୁଥିଲା ।

ଜେଲ୍ ସାଥି ଚନ୍ଦ୍ରଧର ଆଉ ବିନାୟକ ଗୁରୁଆ ଓରାଂ ଅଦୃଶ୍ୟ ହେବାଯାଏ ଅନେଇଁ ରହିଥିଲେ । ସେମାନେ ମୁକ୍ତି ପାଇବାକୁ ଅନେକ ଦିନ ବାକି—କେବେ ସେଦିନ ଆସିବ ? ଅତୀତ ପାଇଁ ଅନୁତପ୍ତ ଥିଲେ ସେମାନେ—ମୁକ୍ତି ଦିବସକୁ ସ୍ୱାଗତ କରୁଥିଲେ ମନେ ମନେ ।

ବେଳେବେଳେ ମନ ଭିତରେ ରାଗ ଜନ୍ମେ । ମଣିଷ ରାଗି ଗଲେ ବଣ ପଶୁଠାରୁ ଆହୁରି ଭୟଙ୍କର ହୋଇଯାଏ, ହିତାହିତ ଜ୍ଞାନ ରହେ ନାହିଁ—ଦେହ ଭିତରେ ନିଆଁ ଲଗେ । ଭଲମନ୍ଦ ଭୁଲି, ନ କରିବା କଥା କରିବସେ । ମଣିଷ ମଣିଷକୁ ଖୁନ୍ କରେ, ମଣିଷ ମଣିଷ ବସାରେ ନିଆଁ ଲଗାଏ—ଦେହରୁ ରକ୍ତ ଝରିଲେ, ଘରପୋଡ଼ି ପାଉଁଶ ହୋଇଗଲେ—ମନ ଶାନ୍ତହୁଏ । ତେଣିକି ବିବେକ ଫେରିଆସେ । ଭାବେ, ଯାହା କଲି ଭଲ ହୋଇନି ; ମୁଣ୍ଡ ପୋତି ଦେଇଥିଲେ ସମୁଦ୍ର ଲହଡ଼ା ଭଳି ସବୁ ପାରପାଇ ଯାଇଥାନ୍ତା । ଅନୁତାପ କରିବାହିଁ ସାରହୁଏ । ମୁହୂର୍ତ୍ତିକର କରଣୀ ସଙ୍କାଶେ ମାସ ମାସ—ଯୁଗ ଯୁଗ ଧରି ଭାବନା କରିବାହିଁ ସାର ହୁଏ । ଯାହା ଦେହ ଖଣ୍ଡିଆ ହୋଇ ରକ୍ତ ବୋହୁଥାଏ—ସେ ପୁଣି

ଯୋଡ଼ ହୋଇଯାଏ—ପୋଡ଼ା ଘରର ମାଲିକ ନୂଆ ଇଟା ଦେଇ ସେ ଘରକୁ ଛେକିଦିଏ । କିନ୍ତୁ ରକ୍ତନିଆ ଘରପୋଡ଼ା ଆସାମୀର ମନ ଭିତରଟା ସବୁଦିନ ପାଇଁ ରକ୍ତାକ୍ତ ହୋଇଯାଏ, ପ୍ରବଳ ଅଗ୍ନି ଭିତରେ ସନ୍ତୁଳି ହୋଇ ଛଟପଟ ହୁଏ ଚିରଦିନ ପାଇଁ । ଯେ ଖଣ୍ଡିଆ ମନ, ପୋଡ଼ିଲା ଆତ୍ମା ଯୋଡ଼ ହେବାର ନୁହେଁ କି ଶାନ୍ତ ହେବାର ନୁହେଁ । ଗଦାଧର ଓ ବିନାୟକ ଯଥାକ୍ରମେ ଖଣ୍ଡିଆ ମନ ଓ ନିଆଁ ଲଗା ହୃଦୟ ନେଇ ଲୌହ କବାଟ ଭିତରେ ଉହାଳ ବିକଳ ହେଉଥିଲେ ।

ଆଉ ଚାରୁଆ ଓରାଂ ? ଅନୁତାପ କରିବା ପାଇଁ ତାର କୌଣସି କଥା ନଥିଲା । ସେ ଖୁନ୍ କରିନି କି ଘରପୋଡ଼ି ନାହିଁ । ତାର ଘର ପୋଡ଼ିବାକୁ ଆସିଲାବେଳେ ସେ ପ୍ରତିବାଦ କରିଥିଲା । ଦୋଷୀ ନିର୍ଦ୍ଦୋଷୀକୁ ଆପଣା ହାତରେ ଦଣ୍ଡଦେଲା । ଆଉ ପାଞ୍ଚଜଣ ତାକୁ ସମର୍ଥନ କଲେ । ସେ ବିଚାରକର ଦୋଷଯୁକ୍ତ ଅବିଚାରର ଶୀକାର ହେଲା । ଅତି ଆପଣାର ସଂସାର, ଘର ଦ୍ୱାର, ସ୍ତ୍ରୀ ଓ ସନ୍ତାନସନ୍ତତିମାନଙ୍କ ସଙ୍ଗ ସୁଖରୁ ଦୀର୍ଘଦିନ ସକାଶେ ବିଚ୍ଛେଦ ହେଲା—ଜେଲ ଭିତରେ ଅକାରଣଟାରେ ଦିନ ଗୁଡ଼ିକ ଚାଲିଗଲା— ଧରାବନ୍ଧା ଜୀବନ ଭିତରେ ଯେ ଖାଲି ଖଟିଛି ଓ ଖାଇଛି । ତାର ଭିତରେ କିଛି ନୂତନତା ନାହିଁ କି ବୈଚିତ୍ର୍ୟ ନାହିଁ । ଚାରୁଆ ଓରାଂ ଦୀର୍ଘଶ୍ୱାସ ଦେଇ ଅତୀତକୁ ମନ ଭିତରୁ ପୋଛି ଦେବାକୁ ଚେଷ୍ଟା କରୁଥିଲା ।

ଚାରୁଆ ଓରାଂ ଚାଲିଛି—ଉପରେ ନୀଳ ନିର୍ମଳ ମହାକାଶ—ତଳେ ବିଧିର ବସୁମାତା—ମଝିରେ କୋଳାହଳ ପୂର୍ଣ୍ଣ ବିସ୍ତୀର୍ଣ୍ଣ ରାଜପଥ ମୂକ ଆଉ ସ୍ଥବିର ! ଯିବା ଆସିବା ଲୋକ ସମସ୍ତେ ଅପରିଚିତ ! ସମ୍ବଲପୁର ଏବେ ଅନେକ ବଢି ଯାଇଛି । ଆଗର ଚନ୍ଦ୍ରାମୁହଁ ବିଦେଶୀ ଲୋକ ଗହଳି ଭିତରେ ବୁଡ଼ିଗଲାଣି ।

ନୂଆଲୋକ—ନୂଆଘର ଆଉ ଦୋକାନ ବଜାର—ସବୁ ନୂଆ ! ଚାରୁଆ ଓରାଂ ବି ନୂଆ ମଣିଷଟିଏ ଭଳି ମୁଣ୍ଡପୋତି ଚାଲି ଯାଉଥିଲା । ଏତିକି ବେଳେ ସାଥୀ ସାମୁଏଲ୍ ସାହୁ ଥାଆନ୍ତା କି ? ତା'ର ମୁକ୍ତ ତାରିଖ ଯଦି ଜାଣିଥାଏ ତେବେ ଷ୍ଟେସନ ପାଖରେ ଅବଶ୍ୟ ଦେଖାହେବ । ତେଣିକି ଅସୁବିଧା ଆଉ କିଛି ନାହିଁ ।

ହଠାତ୍ ଶୁଣାଗଲା ଠନ୍-ଠନ୍-ଠନ୍ । ଦିନ ବାରଟାର ସଙ୍କେତ ଶୁଭିଲା ଏକାବେଳକେ ଦଶ ପନ୍ଦରଟି କୋଠା ଦେହରୁ । ଟିକ୍ ସେତିକିବେଳେ ଭୀମ ଗର୍ଜନରେ ହାବଡ଼ା ପାସେଞ୍ଜରଟି କ୍ଷେତ୍ରରାଜପୁର ଆଡ଼ୁ ମାଡ଼ି ଆସୁଥାଏ । ପାସେଞ୍ଜର ଗାଡ଼ିର କାନଫଟା ଆବାଜ ଗଙ୍ଗାଧର ମେହେର କଲେଜର ନବନିର୍ମିତ ପ୍ରାସାଦ ଦେହରେ ଧକ୍କା ପାଇ ଲେଉଟି ଆସୁଥାଏ ।

ରେଲଷ୍ଟେସନରେ ଅସମ୍ଭବ ଭିଡ଼ । ହାବଡ଼ା ପାସେଞ୍ଜର ଚାଲିଲାଦିନୁ ସମ୍ବଲପୁର ସହରରେ ଜନସମାଗମ ବୃଦ୍ଧି ପାଇଛି । କଲେଜ ପିଲଙ୍କର ସୌଖୀନ ଭ୍ରମଣରେ ସେହି ଗହଳି ଆଉ ଜନସମାଗମ ଭିତରେ ରୋମାଣ୍ଟିକ ରଙ୍ଗ ବୋଳି ଦେଇଛି ।

ଚାରୁଆ ଓରାଂ ସନ୍ଧାନୀ ଆଖିରେ ଏପଟ ସେପଟ ଚାହିଁବାକୁ ଲାଗିଲା । ପରିଚିତ କେହିହେଲେ ନାହାନ୍ତି । ସାମୁଏଲ୍ ସାହୁଙ୍କୁ ନପାଇ ସେ ବ୍ୟତିବ୍ୟସ୍ତ ହୋଇ ପଡ଼ୁଥିଲା ।

ସିଗନେଲ୍ ଦେଖି ସେ ବ୍ୟସ୍ତ ହୋଇ ତୃତୀୟଶ୍ରେଣୀ ଯାତ୍ରୀର ଲୋକ ଗହଳ ଭିତରେ ନିଜକୁ ମିଶାଇଦେଲା ।

ରେଲ୍‌ଗାଡ଼ି ଶାସନ ଷ୍ଟେସନ ଛାଡ଼ିଲା ।

ରେଲଗାଡ଼ିଟି ସାପେଇ ସାପେଇ ଶାଳବଣ ଭିତରେ ପଶିଲା । ବଣେଇ ପାହାଡ଼ ମୁହଁମାଡ଼ି ଶୋଇଥିଲା । ସାଇରନ୍ ଶୁଣି ଝାଡ଼ି ଝୁଡ଼ି ହୋଇ ବସି ଆବାଜ ଦେଲା, 'ହେଇ ମୁଁ ଉଠିଲି !'

ଗୁରୁଆ ଓରାଂର ମୁଣ୍ଡ ଭିତରେ ସହସ୍ର ଭାବନା ଜୁଆର ଛୋଟାଉଛି । କ୍ଷୀପ୍ର ରେଲ୍‌ଚକର ବ୍ୟଗ୍ରତାଠାରୁ ତା'ର ଭାବନା କ୍ଷୀପ୍ର—ଆହୁରି ବ୍ୟଗ୍ର ।

ଗୁରୁଆ ଓରାଂ ସଳଖ ହୋଇ ବସିଲା । ମନର ଭାବନାକୁ ଲଗାମ ଦେବାକୁ ଓଠ ଫାଙ୍କରେ କଡ଼ା ବଡ଼ିଟିଏ ଗୁଞ୍ଜିଦେଇ ଦିଆସିଲି ମାରିଲା । ଲଗ ଲଗ ଦୁଇତିନି ଢୋକ କୁହୁଳା ପିଇନେଲା ପ୍ରଥମେ । ତାପରେ ରଙ୍ଗ ରଙ୍ଗ ଧୂଆଁ ଛାଡ଼ିଲା । ଟ୍ରେନ୍ ଡବାର ଆବଦ୍ଧ ବାୟୁଟିକକ କଡ଼ା ଧୂଆଁରେ ଗୁଡ଼ି ହୋଇ ପଡ଼ିଲା । ପାଖରେ ବସିଥିବା କପଟ ବୃଦ୍ଧଜଣକ ସମ୍ଭାଳି ନପାରି ଖଁ ଖଁ ହୋଇ କାଶିବାକୁ ଆରମ୍ଭ କଲେ । ସହଯାତ୍ରୀମାନେ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ତାର ବଡ଼ ଆଉ ମୁହଁକୁ ଚାହିଁଲେ । ଗୁରୁଆ ଓରାଂ ପ୍ରକୃତିସ୍ଥ ହେଲା ପରେ ନିଜ ଭୁଲ୍ ବୁଝିପାରି ଅଧା ପୋଡ଼ା ବଡ଼ିଖଣ୍ଡକୁ ଝରକାରେ ହାତଟେକାଇ ତଳକୁ ଫୋପାଡ଼ିଦେଲା ।

ଶାଳବଣର ଫାଙ୍କ ମଝିରେ ଟ୍ରେନ୍ ଦ୍ୱିଗୁଣ ବେଗରେ ଗଡ଼ି ଚାଲିଥାଏ । ମହାନଦୀ ବନ୍ଧପଟୁ ହେମାଳ ପବନ ବନ୍ଦ ଡବା ଭିତରେ ସମସ୍ତ ବଡ଼ି ଧୂଆଁକୁ ସଫା କରିଦେଲା ।

ଚାରୁଆ ଓରାଂ ଝରକାରେ ମୁହଁ ଗଳାଇ ନିଶ୍ୱନ ପଡ଼ିଆକୁ ଚାହିଁଲି । ପଡ଼ିଆ ସାରା ବୁଦବୁଦୁକିଆ ପାଚିଲା ବଣ ! କେନ୍ଦୁ ଗଛରେ ନୂଆପନ କଅଁଳିଛି । କୁରେଇ ଫୁଲର ମହାଣିଆ ଗନ୍ଧ ବାୟୁମଣ୍ଡଳର ସ୍ତରେ ସ୍ତରେ ସୁଗନ୍ଧ ବୁଣି ଦେଉଛି ।

ବରିଙ୍ଗ ଏହି କୁରେଇ ଫୁଲକୁ ଖୁବ୍ ଭଲପାଏ । ତାର କଳା ମଚମଚ ବାଳ ଗୋଛାରେ ସୁନ୍ଦର ଖୋଷାଟିଏ ପକାଇ ଚାରିକଡ଼େ କୁରେଇ କଡ଼ ଆଉ ଫୁଲ ଖୋସେ । ବରିଙ୍ଗର ସୁନ୍ଦର ମୁହଁକୁ ସଙ୍ଗ କୁରେଇ ଖୁବ୍ ମାନେ ।

ରେଳଗାଡ଼ି ପଡ଼ିଆ ଡେଇଁ ବଲମାଳ ଭିତରେ ପଶିଗଲା । ଆଗକୁ ପୋଲ ପଡ଼ିବ । ଟ୍ରେନ ସେଠେଇ ସେଠେଇ ଚାଲିଲା । ଏଇଠି ସବୁଦିନ ଟ୍ରେନର ଧ୍ୱନିଗତି ବଦଳି ଯାଏ । ଶ୍ୱାସବେଗୀ ଭଳି ଧକେଇ ଧକେଇ ଚାଲେ ।

ମଳିନ କିରଣରେ ଅସ୍ତଗାମୀ ସୂର୍ଯ୍ୟର ବିଦାୟବାର୍ତ୍ତା ଚେଲିଗି ହୋଇଥାଏ । ପୃଥିବୀ ଆଳସ୍ୟର ହାଇ ମାରୁଥାଏ ! ଚାରୁଆ ଓରାଂ ଫିଙ୍ଗାଣିଆ ହାଇ ଦାନ୍ତ ଗୁଡ଼ିକ ଚୂଟକି ଫୁଟାଇଲା । ଠିକ୍ ଏହି ସମୟରେ ଓରାଂ ଝୋଲଗୁଡ଼ିକ ଅସ୍ୱାଭାବିକ ଭାବରେ କର୍ମଚଞ୍ଚଳ ହୋଇଉଠେ । ଆବାଳ ବୃଦ୍ଧ ବନିତା କାମସାରି ଝୋଲ ଭିତରକୁ ଫେରନ୍ତି । କୁଅମୂଳେ ଓ ଗାଡ଼ିଆତଳେ ଗହଳି ବଢ଼େ । ଗୋଠ ବାହୁଡ଼ା ଗୋରୁଗାଈ, ଛେଳି ମେଣ୍ଢାଙ୍କର ବିଭିନ୍ନ ସ୍ୱର ସମଷ୍ଟିରେ ଗାଁ ଦାଣ୍ଡ ଉଚ୍ଛୁଳି ଉଠେ । କର୍ମକ୍ଳାନ୍ତ ଗୃହସ୍ଥ ଦାଉଡ଼ିଆ ଖଟ ଉପରେ ବସି କ୍ଳାନ୍ତି ମାରୁ ମାରୁ ଗପ ଆରମ୍ଭ କରିଦିଅନ୍ତି । ଘରର ପାଖିଲି ଝିଅ ବୋହୂମାନେ ଚୂଲି ଧରାଉ ଧରାଉ ଗୀତ ବୋଲନ୍ତି । ଚାଳ ମଥାନ ଉପରୁ ଚୂଲିଧୂଆଁ ଉଠି ଆକାଶରେ ଧୂମକୁଣ୍ଡଳୀ ସୃଷ୍ଟିକରେ ।

ଓସ୍ୱାଂ ଝୋଲର ସନ୍ଧ୍ୟା ଆରାମଦାୟକ । ଦିନ ସାଙ୍କର ହାଡ଼ଭଙ୍ଗା ଖଟଣି ପରେ ଆଦିବାସୀ ଯୁବକ ଯୁବତୀ କ୍ଳାନ୍ତିର ନିଶ୍ୱାସ ମାରିବାକୁ ଅବକାଶ ପାଆନ୍ତି । ନାଚ ଗୀତର ବ୍ୟବସ୍ଥା ହୁଏ ବେଳେବେଳେ । ନିଶାନ୍ ବାଦ୍ୟ ନିଶବ୍ଦ ବାୟୁ ମଣ୍ଡଳକୁ ମୁଖରିତ କରେ । ଅନୂଢ଼ା ଓସ୍ୱାଂ ଝିଅ ଅବିବାହିତ ଓସ୍ୱାଂ ତରୁଣର ହାତଧରି ନାଚେ । ମାଦଳ, ମହୁରୀ, ଧୁଡୁକିର ମିଠାସ୍ୱର ଗୁଞ୍ଜ ଭିତରେ ଅସଂଖ୍ୟ ଉତ୍ତେଜନା ଭରିଦିଏ । ପାଦର ତାଳ ତୀବ୍ର ହୁଏ—ଓଠର ଗୀତ ବ୍ୟଗ୍ରହୁଏ । ଭ୍ରୂଲତା ଥରିଥରି ଉଠେ । ଓସ୍ୱାଂ ଝିଅର ଉଜ୍ଜ୍ୱଳ ଦୃଷ୍ଟିରେ ଜୁଆର ଛୁଟେ । ପକ୍ୱ ଜାମ୍ବୁକୋଳି ଭଳି ମାର୍ଜିସିଆ ଆଉ ଚିକ୍କଣ ଦେହ ଦୋହଲି ଦୋହଲି ନାଚେ । ଆକାଶରେ ଅସଂଖ୍ୟ ତାରକାର ଶ୍ରେଣୀ ଜଳିବାପାଏ ସେମାନେ ଆତ୍ମହରା ହୋଇ ନାଚନ୍ତି । ହାଣ୍ଡିଆର ନିଶା ମାତାଲ କରିଦିଏ । ଏହି ଚଞ୍ଚଳ ନୃତ୍ୟକାରୀ ଓ ଆତ୍ମବିଭୋର ଦର୍ଶକମାନଙ୍କୁ ସପ୍ତର୍ଷି-ମଣ୍ଡଳ ଢଳକୁ ଖସିଲେ ହୋସ ଆସେ—ନାଚ ବନ୍ଦ ହୁଏ । ଗୀତ ସରିଯାଏ !

ଗୁରୁଆ ଓସ୍ୱାଂର ମନ ପୁଲକି ଉଠୁଥିଲା । ଅନେକ ଦିନପରେ ଫେରୁଛି ରାଉରକେଲା, ତାର ସ୍ୱପ୍ନର ରାଉରକେଲା ! ରାଉର-କେଲରେ ହୁଏତ ଏଇନେ ସଞ୍ଜ ହୋଇ ଆସୁଥିବ ! ଗାଁ ବନ୍ଧର ଆକାଶିଆ ନୀଳପାଣିରେ ପଦ୍ମଫୁଲ ମୁଦି ମୁଦି ଆସୁଥିବ । ଓସ୍ୱାଂ ସାହିର ସବୁଦୁଆର ଫିଟି ଯାଇଥିବ ! ଜଡ଼ାଦୀପର ଜମାନା କେବେଠୁଁ ସରି ଯାଇଛି । ଏବେ କେରୋସିନ ଡିବିର ଆଖିଝଲସିଆ କିରଣ ପ୍ରତି ଅଧି ର ଘରେ ବନ୍ଦୀ ହୋଇ ପଡ଼ିଥିବ !

ବଡ଼ବନ୍ଧରେ ଆଉ କଣ ଏଥାଲ୍ ପାଣି ଥିବ ? ସେଦିନେ ବୁଝାଇ କହିଲେ କେହି ତା' କଥାକୁ କାନକୁ ନେଲେ ନାହିଁ । ହୁଡ଼ା ବାନ୍ଧି ପାଣି ଗୁଣ୍ଠି ମାଛ ଧରିଲେ । ଦି'ହାତ ମାଟି କରିଦେଲେ

ବସନ୍ତି ଅନେକ କାମରେ ଲଗନ୍ତି—ମାଛ ଖାଇବେ, ପଦ୍ମ କନ୍ଦା କାଢିବେ—ଅଥଚ ମାଟି ହାଣ୍ଡିଆ ଛଡ଼ିବାକୁ ଡାକିଲେ ପାଖ ମାଡ଼ିବେ ନାହିଁ । ବଡ଼ ବନ୍ଧର ଡାହାଣ ମୋଡ଼ ପାଖରେ ସେ ଯେଉଁ ମାଳୁ । ସେପରି ଚଳେ ଚନ୍ଦ ସବୁ ମାଛ ଯାଇଲେଇ ହୋଇ ପଡ଼ିଥିବେ । ସ୍ନାତ ବ ଜାଲେ ଚନ୍ଦ୍ରଙ୍କ ଉଠେ ଡ଼ିଆମାରିବେ । ତାପରେ ପଚେ ମାଛର ମଡ଼କ ! ବୋହିଲେ ସରିବ ନାହିଁ । ମାଛ ସୁଖୁଆରେ ଗାଉଁରବେଳ ଗନ୍ଧାଇବ । ଏଥର କେତେ ମାଛ ମରିଥିବେ ?

ଗୁରୁଆ ଓଳିଂର ଓଠକୁ ସବୁ ହସର ଲହୁ ଖିଅଟିଏ ଝରି ପଡ଼ୁଥିଲା । ବଡଙ୍ଗି ମାଛ ମାଂସକୁ ଖୁବ୍ ଭଲପାଏ ! ଯେତେହେଲେ ମାଇପୀ ମଣିଷ ! ମାଛ ମାଂସ ଉପରେ ଖୁବ୍ ଲୋଭ । ମାଛ ଦେଖିଲେ ହାତରେ ପାଇଟି ପଡ଼େ ନାହିଁ । ଅଡ଼ଶଯ୍ୟ ଚଞ୍ଚଳ ହୋଇ ଉଠେ ! ହସି ହସି ବାଙ୍କ ଗୃହାଣୀ ହାଣେ ।

ଆଜି ତାର ଦୁଇ ଝିଅ ! ଗୁଲବୀ ଆଉ ଦୁଲବୀ ? ଢନସାର ଛନ ଛନ ହେଉଥିବେ । ଆଣ୍ଠୁଏ ପାଣି ପଙ୍କରେ ଢାଣ୍ଟି ଚକଟି ହେଉଥିବେ । ବେଳସିନା ବୁଡ଼ିଯିବ—ମନ ବୁଝିବ ନାହିଁ ।

କଣ କରୁଥିବେ ଏବେ ସେମାନେ ? ସବତ ମାଆ ପାଖରେ ଝିଅ ଦୁଇଟା ଚଳୁଥିବେ କେମିତି ? ସାବତ ମାଆ ବଡଙ୍ଗି !

ଲୋକେ କହନ୍ତି ସାବତମାଆ ସାତ ପରଟୁ ଭର । କିନ୍ତୁ ବଡଙ୍ଗି ତ ସେଭଳି ମଣିଷ ନୁହେ ! କେତେ ସ୍ନେହ, ସ୍ନୁଆଗ ତାର । ଫେଟ୍ଟା କାଟି ସାବତଝିଅ ମୁହଁରେ ଦେବ । ତାକୁ ସେପରେ ବଳେ ବାହାହେବାକୁ ମନସ୍ଥ କଲା ବାରଲୋକ ବାରକଥା କହିଲେ ।

ଝିଅ ଦୁଇଟାର ତଣ୍ଟି ଚିପିଦେଲ—ଜଣେ କହିଲା ।

ବଡଙ୍ଗି ଗୁରୁଆ ମୁହଁରେ ହସଣି ଦେଲା—ଆଉ ଜଣେ କହିଲା ।

ଗୃହୁଆ ଓଗାଂ ଏଥର ମାତିଥିଲା—ଆଜ କଏ କହୁଥିଲା ।

ଗୃହୁଅର କାନ ପାଖରେ ଏବେ ମଧ୍ୟ ସେହି ଆକ୍ଷେପବାଣୀ ପିଟିହେଲା । କଣ ଲଗାଉଥାନ୍ତି ପିଏ ? ମସାର ପୁଣି ଚଳାଇ ଥାନ୍ତି କିଏସେ ? କାମିବାଡ କଥା ବୁଝିଥାନ୍ତା ନା ଝିଅ ଦୁଇଟିର ହେପାଜତ କରିଥାନ୍ତା ??

ସତରେ କଣ ଝିଅମାନଙ୍କ ପାଇଁ ସେ ଦୁଢଅ ହେଲା ? ଗୃହୁଆ ଓଗାଂ ଚେତସ୍ତ ହେଲା । ବରଙ୍ଗିକୁ ଦେଖି ସେ ତ ଦୁନିଆକୁ ଭୁଲି ଯାଉଥିଲା । ନିଜ ପାଇଁ ନିଜେ ବିବାହ କରିଛି ସେ—ବରଙ୍ଗିର ପ୍ରେମରେ ପଡ଼ି ବିବାହ କଲା ! ଝିଅ କଥା ତ ମୋଟେ ତାର ମନକୁ ଆସୁନ୍ତି ।

ବରଙ୍ଗି !

କଳ୍ପିତ ସୌନ୍ଦର୍ଯ୍ୟ ସାକ୍ଷାତ ରୂପ ନେଇଛି ତାର ଶରୀରରେ ।

ହସିଲେ ଫୁଟିଲା ସଜଫୁଲଟିଏ ପରି ଦେଖାଯାଏ ! ତାର ଗଳାରେ ଲୋହିତ ପୋହଳା ଚମତ୍କାର ଦେଖାଯାଏ । ନୀଳ ପଖୀଟି ପରି ଦେହଟି । ଓଷ୍ଠ ଯୁଗଳରେ ରକ୍ତ ଲୋହିତ ନବାରୁଣିମାର ଆଭା ! କଥା କଥାକେ ହସେ ! ହସ ତାର କ୍ଷଣିକ କଳାପ ନୁହେଁ, ନିତ୍ୟ ସହଚର । ସେହି ଶ୍ୟାମଳ, ସୁଗୋଲ ମୁହଁଟି ପାଇଁ ନିଟୋଳା, ନିଟୋଳ ହସଟିଙ୍କ ଯେମିତି ସ୍ୱର୍ଗୀୟ ଦାନ । ସେ ମୁହଁକୁ ଯେ ହସ ସୁନ୍ଦର ଦିଶେ ! ତାଙ୍କ ଭୂଲତା ତଳେ ଚୁନ-ଚୁନିଆ ଚୋଖର ଆଟିହି'ଟା ରଙ୍ଗୀନ ଢେଉର ପରଶ ଦିଏ । ମାଂସଳ ଗୁଣ୍ଡରେ ତାର ଐଶ୍ୱର୍ଯ୍ୟର ସଞ୍ଚିତ ଭଣ୍ଡାର । ମନ ମୀନକୁ ଅନାୟାସରେ ଅଟକାଇ ରଖେ । ତାର ସେହି ନିଦଞ୍ଚ ଖୋଷାରେ କେତେ ଫୁଲ ସମ୍ଭାର !!

କଣ କରୁଥିବ ଅବଳା ବରଙ୍ଗି ?

‘କିଚିମିଚିଆ କଳାବାଡ଼କୁ ତାର ପ୍ରଚଣ୍ଡ ଭୟ । ଦିନଯାକ ହସିବ, ଗାଇବ, ନାଚିବ ଅଥଚ ଅନ୍ଧାର ଦେଖିଲେ ଶୁଖିଆ ହୋଇ ଯିବ । ଘରଭିତରେ କଣ୍ଢା ଦୀପଟିଏ ଜାଳି ଜୁକୁ ଜୁକୁ କରି ଚୁହିଁ ଥିବ । ପିଲ ଦି’ଟାଙ୍କୁ ପାଖରୁ ଛାଡ଼ିବ ନାହିଁ । ସହଳ ସହଳ ଖିଆପିଆ କାମ ତୁଟାଇ ଦେଇ ହାତପାଖରେ ସେମାନଙ୍କ ସକାଶେ ବିଛଣା କରିଦେବ । କିନ୍ତୁ ଆଖିକୁ ତାର ନିଦ ଆସିବ ନାହିଁ ।

‘ଏ କଳା କିଟି କିଟି ରାତିରେ ତୋତେ ଭୟ ଲାଗେନା ?’ ବାଛିଣି ପଚାରିବ ।

“ବାଘକୁ ଯା’ର ଭୟ ନାହିଁ—ଏ କଳା ରାତିକୁ ତାର ଡ଼ର !” ସିଏ ଉତ୍ତର ଦିଏ !

ଛୁଟା ଭାରି ସାହାସିଆରେ ଗୁରୁଆ ! ହସି ହସି କହିବ ବାରଙ୍ଗି, ତାପରେ ଚଞ୍ଚଳ ଚଞ୍ଚଳ ତାପାଇଁ ଭାତ ସାଗ ଗଣ୍ଡେ ବାଢ଼ିଦେଇ ଖାଲି ଉଛନ୍ନ ହେଉଥିବ । ଦୀପକୁ କବାଟ କଣକୁ ଘୁଞ୍ଚାଇ ନେଇ ଆସ୍ତେକରି ଗୁରୁଆ ପେଟ ଭିତରେ ପଶି ତାର ବଳିଷ୍ଠ ଛାତିର ଉଷ୍ମତା ଭିତରେ ଆଖି ବୁଜିଦେବ ।

ଦୀର୍ଘ ପାଞ୍ଚ ବର୍ଷର ବିଚ୍ଛେଦ ସେ ସହିଥିବ କେମିତି ? ଗୁଲବୀ ଆଉ ଦୁଲରୀ ଚଳୁଥିବେ କେମିତି ? ଗୁଲବୀ ଆଉ ଦୁଲରୀ, ମା’ଆ ନଥିବା ଝିଅ ! ବାରଙ୍ଗି କଣ ସେମାନଙ୍କୁ ନିଜ ମାଆର ସ୍ନେହ ଦେଇ ପାରିବ ? ଯାହାବା ସ୍ନେହ ଦିଏ ତହିଁରେ କଣ ଆନ୍ତରିକତାର ସ୍ପର୍ଶ ଅଛି ?

ଗୁରୁଆ ମୁହଁରେ ଅବିଶ୍ୱାସର ଛାୟାପାତ ହେଲା ।

ବାରଙ୍ଗି ତ ଛୁଆଙ୍କ ପାଇଁ ତା ଦରକାର ଆଉ ନାହିଁ । ପର-ଛୁଆ ପାଇଁ ସେ ବା ବ୍ୟସ୍ତହେବ କାହିଁକି ? ସେମାନଙ୍କ ଦେହରେ ତ ନିଜ ରକ୍ତମାଂସର ସ୍ୱାକ୍ଷର ନାହିଁ । ସେ ସଦାବେଳେ ଚାହୁଁଛି ନିଜ ପେଟର ଛୁଆ ବଢ଼ାଏ । ନିଜ ରକ୍ତମାଂସ ଦେଇ ସୃଷ୍ଟି କରିବ

ସନ୍ତାନ । ନିଜ ଦେହର ଲହୁଦେଇ ବଢ଼ାଇବ । ନିଜେ ଦାହଗଞ୍ଜି ହେଇ ସନ୍ତାନକୁ ସୁଖରେ ରଖିବ—ହାଉଛଟା କଲେ ସହିବ ନାହିଁ । ସବୁ ମାଆ ତ ଏଇୟା ଚାହାନ୍ତି । ବରଂ ନାରୀ ଜୀବନର ଏହା ପ୍ରଧାନ କାମନା—ଆଉ ସବୁ ଗୌଣ । ସନ୍ତାନ ପ୍ରାପ୍ତି ପାଇଁ ନାରୀ ପୁରୁଷକୁ ଯୁଗେ ଯୁଗେ ସନ୍ତୁଷ୍ଟ କରି ଆସିଛି । ନିଜ ଦେହର ସୌନ୍ଦର୍ଯ୍ୟ ଦେଇ ପୁରୁଷକୁ ଖୁସି କରିବାକୁ ପଣ କରିଛି । ଏଥିପାଇଁ ପୁରୁଷର ସହସ୍ର ଲାଞ୍ଛନାକୁ ମୁଣ୍ଡପାତି ସହିଯାଏ । ସଂସାର ଭିତରେ ସୃଜନହିଁ ତାର ଏକାନ୍ତ ଲକ୍ଷ୍ୟ ।

ନାରୀ ଆଉ ପୁରୁଷ । ଗୋଟିଏ ଭୀମ, ରୌଦ୍ର ଆଉ କର୍କଶ କିନ୍ତୁ ଅନ୍ୟଟି ଶାନ୍ତ, କୋମଳ ଆଉ କମନୀୟ । ପୁରୁଷ ନିଜର ଉଦ୍ଧତ ପ୍ରକୃତି ନେଇ ବଳିଷ୍ଠ—ଆଉ ନାରୀ ସହିଷ୍ଣୁ ଗୁଣ ନେଇ ସୌମ୍ୟ । ପୁରୁଷ ଆଶ୍ରୟ ଦାତା—ନାରୀ ଆଶ୍ରିତା ।

ଏସବୁ ସତ୍ତ୍ୱେ ପୁରୁଷ ଓ ନାରୀ ନିତ୍ୟ ବର୍ତ୍ତମାନ । ଜଣେ ଅନ୍ୟଟିର ପରିପୂରକ—ଗୋଟିଏ ବୃନ୍ତରେ ଦୁଇଟି ଫୁଲର ବିକାଶ ।

ବରିଙ୍ଗି ସୁନ୍ଦରୀ । ତାର ଉଦ୍ଭିନ୍ନ ଯୌବନରେ ରହସ୍ୟର ଫଗୁ । ସେ ଗୁରୁଆକୁ ନିଜ ରୂପରେ ଆକୃଷ୍ଟ କରିବାକୁ ସର୍ବଦା ଜାଗ୍ରତ । ସେ ଚାହେଁ ସନ୍ତାନର ମାତା ହେବାକୁ, ଗୁରୁଆ ତାର ରୂପ ସାଗରରେ ବିଭୋର ହୋଇ ଅବଗାହନ କରିଛି । ତାଙ୍କ ବିବାହିତ ଜୀବନରେ ଅନେକ ଅନୁଭୂତିର ତରଙ୍ଗ । କିନ୍ତୁ ସେ ତରଙ୍ଗ, ସେ ଉଚ୍ଛ୍ୱାସ ନିର୍ଦ୍ଦିଷ୍ଟ ବେଳାଭୂମିକୁ ସ୍ପର୍ଶ କରିନାହିଁ—ଅଧାବାଟରୁ ଫେରି ଯାଉଛି । ଅନେକ ପୂନେଇଁର ଚାକାଜହ୍ନ ସେମିତି ଅକର୍ମା ରହି ଯାଉଛି । ବସନ୍ତ ଆସିଛି ଜୀବନରେ—ମଳୟର ସୌରଭ ଆସିଛି—କିନ୍ତୁ ଗଛରେ ଫୁଲ ଫୁଟିନାହିଁ ।

ବରିଙ୍ଗି ନିଜ ଦେହକୁ ବେଳେବେଳେ ଏକାନ୍ତ ଭାବରେ ଉଣ୍ଡାଏଁ । ବାହାପାଣି ପଡ଼ିବା ପରେ ସେ ଦେହରେ ଅନେକ

ପରିବର୍ତ୍ତିତ ହୋଇଛି । ସମଗ୍ର ଦେହରେ ଯେ କି ଏ ପ୍ରସ୍ଫୁଟିତ ଯୌବନ-ପୁଷ୍ପଗୁଚ୍ଛର ମହମାୟୁ ଶୋଭା ଧାରଣ କରିଛି । କିନ୍ତୁ ନିଷ୍ଫଳ ତାର ଏହି ବିକଶିତ ଯୌବନ । ଆଉ ତ ଯୌବନର ସେହି ଅନବଦ୍ୟ ରୂପଶ୍ରୀ !

ସତରେ କ'ଣ ଏ ଦେହରେ ଫୁଲ ଫୁଟିବ ? ଫଳ ଧରିବ ? ସନ୍ତାନ ସ୍ୱପ୍ନ କଣ ତା ପକ୍ଷରେ କେବଳ ଦୁର୍ଲଭ ? ପ୍ରତିମାସ ନୂତନ ଭାବ ନୂତନ ଚିନ୍ତା ନେଇ ସେ ଅପେକ୍ଷା କରେ । କିନ୍ତୁ ସେ ସୁଦିନ ଫେରିନାହିଁ । ଫେରିବାର କଣ ଆଶା ନାହିଁ ସତରେ ? ଜୀବନ-ବନ୍ଧ୍ୟା ହୋଇ କଣ ତାକୁ କଟିଯିବ ?

ଗୃହୁଆ ବରଙ୍ଗିର ମନର କଥା ବୁଝେ । ବରଙ୍ଗିର ଫୁଲବେଣି ଦେଖିଲେ ତାର ଲୋଭ ହୁଏ । ବଳିଷ୍ଠ ବାହୁ ବଳୟରେ ଆବଦ୍ଧ କରି ବରଙ୍ଗିର ରୂପଯୌବନରେ ସେ ଝଡ ସୃଷ୍ଟି କରେ । ବରଙ୍ଗି ତନ୍ଦ୍ରାଭିଭୂତ ହୋଇ ତା'ର ଘନ ଅନ୍ତଶ୍ଳେଷକୁ ପ୍ରାଣେ ପ୍ରାଣେ ଅନୁଭବ କରେ । ଗୃହୁଆର ନିବିଡ଼ ଚୁମ୍ବନ ତାଙ୍କୁ ଅଶେଷ ଆରାମ ଦିଏ । କିନ୍ତୁ ସେହି ରୋମାଞ୍ଚର ପୃଷ୍ଠଭୂମିରୂପେ କାର୍ଯ୍ୟ କରୁଥାଏ ସନ୍ତାନ ଅଭିଳାଷ ।

ବରଙ୍ଗି ଗୃହୁଆକୁ ସନ୍ତୁଷ୍ଟ କରିବାକୁ ଗୁଲବୀ ଆଉ ଦୁଲସୀକୁ ସ୍ନେହ କରେ । ଗୃହୁଆହିଁ ତ ତା'ର ସଂସାର ! ଗୃହୁଆ ଯଦି ବିଗିଡ଼ି ଯାଏ ତେବେ ତାର ଦଶା ହେବ କଣ ?

ବରଙ୍ଗିର ମନ ଭିତରେ କେବେ କେବେ ଝଡ଼ ଉଠେ । ଗୁଲବୀ ଓ ଦୁଲସୀର ହସଖେଳ ଦେଖିଲେ ତାର ମନ ଉଚ୍ଛନ୍ନ ହୁଏ । ତାର ଗର୍ଭରୁ ଏମିତି ସନ୍ତାନ କେଉଁଠି ଜନ୍ମ ହୁଅନ୍ତେ କି ? ନିଜ ମାଂସ, ନିଜ ରକ୍ତର ଖେଳ ଦେଖି ସେ ଆନନ୍ଦ ହୁଅନ୍ତା । ସେମାନେ ହସୁଥିଲେ ତା'ର ଗୁଡ଼ ଭିତରଟା କୁରୁଳି ଉଠୁଥାନ୍ତା । ତାଙ୍କର ଭିତରେ ନିଜ ଅଙ୍ଗରେ ନିଜ ଆତ୍ମାକୁ ଉପଲବ୍ଧି

କରନ୍ତା। କିନ୍ତୁ ତାହା ମନର କଳ୍ପନା, ଘଡ଼ିର ସ୍ୱପ୍ନ ହୋଇ ରହେ।

ଗୁରୁଆ ଭାବେ ବର୍ଷାଙ୍କ କେତେ ସ୍ନେହ କରେ ସତରେ ! ନିଜର ରୂପ ଯୌବନକୁ ଅକାତରେ ଦାନ କରେ। ଏଭଳି ଏକ ରୂପବତୀ ତରୁଣୀ ପାଇ ନିଜକୁ ଭାଗ୍ୟବାନ ମନେ କରେ ଗୁରୁଆ। ଓଃ, ସାସ୍ତ୍ରୀରେ କେତେଜଣ ଏମିତି ସୁନ୍ଦରୀ ନାରୀ ଥିବେ ? ଅନ୍ୟ ସ୍ତ୍ରୀଲୋକମାନଙ୍କର ଅପେକ୍ଷାକୃତ ଅସୁନ୍ଦର ମୁହଁ କେଇଟି ଆଖି ଆଗରେ ଝଲସି ଉଠେ। ଭାଗ୍ୟରେ ନଥିଲେ କି ବର୍ଷାଙ୍କ ଭଳି ଭାର୍ଯ୍ୟା ମିଳେ ? ସେ ପୁଣି ଦୁଜିଆ ପକ୍ଷ ହୋଇ ? ?

ଟ୍ରେନ ଝାରସୁଗୁଡ଼ାରେ ପହଞ୍ଚିଲା ବେଳକୁ ଉଦାରେ ଅତ୍ୟଧିକ ଭିଡ଼ ଜମିଥିଲା। ଏମ ବର୍ତ୍ତମାନ ଝାରସୁଗୁଡ଼ାରେ ଜନଗହଳି ବଢି ଉଠୁଛି ଅସ୍ୱାଭାବିକ ଭାବରେ। ଦୋକାନ ବଜାରର ଜାକଜମକ ବି ସେହିଭଳି। ଯେତେକଯାକ ବଙ୍ଗାଳି ଶରଣାର୍ଥୀ ପରିବାର ଝାରସୁଗୁଡ଼ାରେ ଠୁଳ। ବ୍ୟବସାୟ ଦୃଷ୍ଟିରୁ ଧନ ବଢୁଛି ! ଏଥି ଶ୍ରୀବନ୍ତ ସହରଟିର ରୂପ ବଦଳି ଯାଉଛି। ଝାରସୁଗୁଡ଼ା ଷ୍ଟେସନ ପ୍ଲାଟଫର୍ମର ମଧ୍ୟ ସେହି ଅବସ୍ଥା। ତୃତୀୟ ପ୍ଲାଟଫର୍ମ ନିର୍ମାଣ ହେବା ପରେ ଚତୁର୍ଥ ପ୍ଲାଟଫର୍ମ ପାଇଁ ଯୋଜନା ଚାଲିଛି। ଲୋକଗହଳିରେ ସମ୍ପ୍ରଦାୟ ସମସ୍ତ କାର୍ଯ୍ୟରତ। କେହି ବିଶ୍ରାମ ନେଉନାହାନ୍ତି। ଅପେକ୍ଷା କରିବାକୁ ସମୟ ନାହିଁ। ନୂଆ ନୂଆ ବ୍ୟବସାୟ ହାତକୁ ଜୁଟୁଛି। ଲୋକଙ୍କ ଆଖିରେ ନିଦ ନାହିଁ। ଖାଲି ଟଙ୍କାର ଚିନ୍ତା ଓ ସ୍ୱପ୍ନ ! ଘଡ଼ି ପାହିଲେ ଟଙ୍କା ଉପାର୍ଜନର ଫିକର। କିନ୍ତୁ ମାନବୋଚିତ ମାନ ସମ୍ମାନ ଉପରେ ମାଟି ପଡ଼ିଯାଉଛି। ହଁ, ପଇସା ହାତରେ ଥିଲେ ଲୋକେ ପଚାରିବେ—ପଇସା ନଥିଲେ ପାଖକୁ ଆସିବ କିଏ ? ଏମ ବର୍ତ୍ତମାନ ଝାରସୁଗୁଡ଼ା ଆଧୁନିକତାର କୃଷ୍ଟି ରୁଚି ଉପରେ ମଥା ଟେକୁଛି।

ଝାରସୁଗୁଡ଼ାର କେଇଟା ଷ୍ଟେସନ ପରେ ଆଖିରେ ପଡ଼ିଲା ରାଜଗାଙ୍ଗପୁର ! ସିମେଣ୍ଟ ସହର ରାଜଗାଙ୍ଗପୁରରେ ସବୁ ସିମେଣ୍ଟ ପରି କଠିଣ ଓ ରୁକ୍ଷ । ପ୍ଲାଟଫର୍ମ କଡ଼କୁ ଲାଗି ଜମା ହୋଇଥିବା ସିମେଣ୍ଟ ଚିଟ୍ ଗୁଡ଼ାକ ସହର ସଭ୍ୟତାର ମୂଳସାକ୍ଷୀ । ମାର୍କେଟ୍ ବଜାରରେ ହଜାର ହଜାର ଟନ୍ ସିମେଣ୍ଟ କାରବାରର ମୁହାଁ-ମୁହିଁ ହିସାବ ହୁଏ । କିନ୍ତୁ ମନର ହିସାବ ବୁଝିବାକୁ କେହି ନାହିଁ । ସିମେଣ୍ଟ ଉତ୍ପାଦନ ବଢ଼ୁଛି—ଆଉ ତାର ସଙ୍ଗେ ସମାନ ତାଳଦେଇ ସିମେଣ୍ଟ ମନର ରୁକ୍ଷ ସଂସ୍କୃତି ବି ମଥାଟେକି ଉପରକୁ ଉଠୁଛି । ସିମେଣ୍ଟ କାରବାର କରି ଛଣଘର ଛପର ହେଲା—ଦୁଇ ଏକର ଜମିରେ ଆଉ ପାଞ୍ଚ ଏକର ମିଶିଲା—କିନ୍ତୁ ମନ ବଦଳିଲା ନାହିଁ । ଆଜିର ରାଜଗାଙ୍ଗପୁର ଆଗର ରାଜଗାଙ୍ଗପୁରର ଗୁଇଟିଏ ଟୁଲି ବସ୍ତା, ଅହନା ବନ୍ଧଘାଟ, ଆବର୍ଜନା ସ୍ତୂପ ମିଶିଷ—ତାହାରି ଭିତରେ ପ୍ରକୃତି ପେଟିହୋଇ ଆର୍ତ୍ତନାଦ କରୁଛି । ସଭ୍ୟ ଅସଭ୍ୟଙ୍କୁ ଶୋଷିଲି ଆଖିରେ ଅନାଉଛନ୍ତି । ସୁବିଧା ପାଇଲେ ମୁଣ୍ଡ ଛେଚି ଖାଇ ଯାଆନ୍ତେ । ଆଦିବାସୀ ମୁଣ୍ଡିଆ ବି ଏଇଠି ରୁକ୍ଷ କର୍କଶ ହୋଇ ଉଠୁଛନ୍ତି । ଶିଳ୍ପବୃତ୍ତି ଭିତରେ ଆବଦ୍ଧ ହୋଇ ସମ୍ବଲପୁର-ଠାରୁ ରାଉରକେଲା ଯାଏ ସମସ୍ତ ମଣିଷ ହୃଦୟ ହୀନ ପଥର ପାଲଟି ଗଲେଣି । ଗୁରୁଆ ଓ ସଂ ଚଳନ୍ତା ରେଲଗାଡ଼ି ଭିତରୁ ଏହି ଅସହନୀୟ ପରିସ୍ଥିତିକୁ ବ୍ୟାକୁଳ ଆଖିରେ ଅନାଇଥାଏ ।

ତାର ଗାଁ ରାଉରକେଲାର ମଣିଷ କଣ ଏମିତି ବଦଳି ଯାଇ-ଥିବେ ? ଖୋଲା ହସ, ନିର୍ମଳ କଥା ସତରେ କଣ ଉଭେଇ ଯାଇଥିବ ? ରାଉରକେଲାର ସେହି ଓଗାଂ ମଲିଠି ଥିବଟି ?

ସବୁଜ ସୁନ୍ଦର ରାଉରକେଲାର କମନୀୟ ଶୋଭାଶ୍ରୀ ଗୁରୁଆ ଆଖିରେ ସ୍ୱପ୍ନ ବୁଣିଦେଲା । ସେଇ ତାର ଜନ୍ମମାଟି—ଜୀବନର ପ୍ରଥମ କିରଣ ଦେଖିଛି ସେହି ମାଟି କୋଳରେ । ଧୂଳି ବାଲି, ରାସ୍ତା-

ଯାଉ ଆଜି ଆଖପାଖର ପ୍ରତ୍ୟେକ ମଣିଷ ତାର ଅତି ଆପଣାର । ଶରୀରର ପ୍ରତିଟି ଅଙ୍ଗ ପ୍ରତ୍ୟଙ୍ଗରେ ରାଉରକେଲାର ଖୋଲା ପବନ, ମନ ମତାଣିଆ କାରଣ ଓ ମିଠା ମାଟିର ସ୍ପର୍ଶ ଅଛି । ରାଉରକେଲାରେ ସେ ଲଙ୍ଗଳା ହୋଇ ଖେଳିଛି—ପୁଣି ବଡ଼ହୋଇ ଜମି ଚଷିଛି, ପଡ଼ିଆ ଜମିକୁ ଉଠିଆ କରି ଅନେକ ଫସଲ ଭିଆଇଛି । ତାର ଦେହର ଲହୁ ଢ଼ାଳି ଠାଙ୍ଗର ଜମିକୁ ଉର୍ବର କରିଛି । ସେଇଠି ଧାନର ନିମ୍ବଳିଆ ଖେତ, ଶୋରିଷ ଫୁଲର ହଳଦିଆ ବର୍ଣ୍ଣ ଓ ଆମ୍ବ ଫୁଲର ମନମତାଣିଆ ସୁଗନ୍ଧକୁ ମନଭରି ଉପଭୋଗ କରିଛି । ସେଇ ତାର ଅତି ଆଦରର ଗାଆଁ—ଜନମ ମାଟି ରାଉରକେଲା । ନିଜ ପ୍ରାଣଠୁ ବଳି ଅଧିକ ସ୍ନେହକରେ ଗାଆଁ ମାଟିକୁ । ମାଟି ତ ନୁହେଁ—ସର୍ବସହଣୀ ମାଆ ! ଦୁନିଆର ବଳିଷ୍ଠ ଆକର୍ଷଣ ।

ଏଇ ମାଟି, ଏଇ ମାଆପାଇଁ ସେଦିନ ସେ ସରକାର ବିରୁଦ୍ଧରେ ବିପ୍ଳବ କରିଥିଲା । ପ୍ରାଣ ଯିବ ପଛକେ ଗାଆଁ ମାଟି ଛାଡ଼ିବ ନାହିଁ । ଗାଁରୁ ଉଠାଇ ଦେଉଥିବା ଖବର ଶୁଣି ରକ୍ତ ତାର ତାତି ଉଠିଲା । ସେ ବିଦ୍ରୋହ ଆରମ୍ଭ କରିଥିଲା ସରକାରର କଠୋର ନିଷ୍ପତ୍ତି ବିରୁଦ୍ଧରେ । ରାଉରକେଲାରେ ଇସ୍ପାତ-କାରଖାନା ହେବ । ଜର୍ମାନ ଦେଶରୁ ଲୋକ ଆସି ନକ୍ସା ତିଆରି କରିବେ । ଦେଶର ଏକ ବୃହତ୍ ଉତ୍ପାଦନ କେନ୍ଦ୍ର ରୂପେ ଓଡ଼ିଶାର ଖ୍ୟାତି ବଢ଼ିବ ! ଅନେକ କୋଠା ତିଆ ହେବ— ସଭ୍ୟ ସହରଟିଏ ଗଢ଼ି ଉଠିବ । ରାସ୍ତାଘାଟରେ ଗାଡ଼ି ଯାଉଥିଲେ ମାଟି ଉପରେ ମୂର୍ଚ୍ଛ ଦିଶିବ— ଦେଶର ଆର୍ଥିକ ସ୍ୱଚ୍ଛଳତା ଫୁଟିଉଠିବ । କିନ୍ତୁ ଓରାଂ ପଲ୍ଲୀର ଅବସ୍ଥା କଣ ହେବ ? ତାଙ୍କ ଦୁଃଖ ଦୁର୍ଦ୍ଦଶା ବୁଝିବ କିଏ ସେ ? ଏତେବଡ଼ ସୁନ୍ଦର ଗାଁ, ଜମି, ଫସଲ ଆଖି ଆଗରେ ଧୂଳି ହୋଇଗଲେ, ମାଟିର ଛୁଆ କି ସମ୍ଭାଳି ପାରେ ?

ଗୃହୁଆ ଓରାଂ ମନର ଘରଯାମ୍ୟ ହରାଇ ବସିଲା । ଲୋକଙ୍କୁ ଏକଜୁଟ କରି ପ୍ରତିକ୍ରିୟାଶୀଳ ଦଳ ସଙ୍ଗରେ ଏକଜୁଟ ହେଲା । ଅନ୍ୟାନ୍ୟମାନେ ସୁବିଧା ଦେଖି ଖସିଗଲେ । ବର୍ଷା ଦେଖି ଛତା ଆଡ଼େଇବା ସ୍ୱଭାବ ତାଙ୍କର । କିନ୍ତୁ କେତେକ ଅଦ୍ଭୁତକର କାର୍ଯ୍ୟରେ ହାତଦେଇ ଧରା ପଡ଼ିଲା ଗୃହୁଆ ଓରାଂ । ଦୀର୍ଘ ପାଞ୍ଚବର୍ଷର ସଜା ପାଇଲା ।

ଅନେକଦିନ ପରେ ଗାଁ ମାଟିକୁ ଫେରୁଛି ଗୃହୁଆ ଓରାଂ । ନିଜ ଗାଆଁ, ନିଜ ପରିବାରର ଆକର୍ଷଣ ଆଜି ତାଙ୍କୁ ଘରମୁହାଁ କରିଛି । ପ୍ରିୟତମା ପତ୍ନୀ ଓ ବାତ୍ସଲ୍ୟ ମମତାର ମୋହ ତାଙ୍କୁ ନୀଡ଼ମୁଖୀ କରିଛି । ଗୃହୁଆ ଓରାଂ ନିଜ ଘର ଓ ଗାଁର ମିଠାକଥା ଭାବୁ ଭାବୁ ନିଦ ହୋଇଗଲା ।

ଅବଚେତନ ମନରେ ମଧୁର ସ୍ୱପ୍ନ ତାଙ୍କୁ ଅଶେଷ ଆନନ୍ଦ ଦେଲା । ଶୋଇ ଶୋଇ ସେ ହସୁଥିଲା । ନିଶ୍ୱାସ ପବନ କ୍ଷୀପ୍ରତର ହୋଇ ଉଠୁଥିଲା । ସେ ସ୍ୱପ୍ନରେ ଦେଖିଲା ବାଉରକେଲକୁ ଅନେକ ଦିନ ପରେ ଫେରି ଆସିଛି । ସମସ୍ତେ ମୁରୁକ ମୁରୁକ ହସି ତାଙ୍କୁ ଅଭିବାଦନ ଜଣାଉଛି । ପାଞ୍ଚଟି ବର୍ଷ ଭିତରେ ଦେହରେ ତାର ଅନେକ ପରିବର୍ତ୍ତନ ହୋଇଛି । ଗାଲ ଆଉ ବେକତଳେ ମାଉଁସ ଲାଗିଛି । ଭୁଡି ଅସମ୍ଭବ ଭାବରେ ଫୁଲି ଯାଇଛି । ମୁଣ୍ଡର କୁଞ୍ଚୁକୁଞ୍ଚିଆ କେଶ ଅଙ୍ଗାର ଅନେକ ମୋଟା, ବହୁତ କଳା ଦିଶୁଛି ।

ଗୁଲବୀ ଆଉ ଦୁଲବୀ ମଧ୍ୟ ସୁସ୍ଥ ସୁନ୍ଦର ଦେଖା ଯାଉଛନ୍ତି । କିନ୍ତୁ ତାଙ୍କ ଦେହର ମନର କିଛି ହେଲେ ପରିବର୍ତ୍ତନ ହୋଇ ନାହିଁ । ଅଭିମାନିଆ ଆଖିରେ ତାଙ୍କର ଅନେକ ଅଭିଯୋଗର ବାର୍ତ୍ତା ।

ଗୃହୁଆ ଓରାଂ ଘର ଭିତରକୁ ପଶିଯାଇ ସମସ୍ତଙ୍କୁ ନିଜ ଛାତି ପାଖକୁ ଆଉଜାଇ ଆଣିଲା—ଏହି ତାର ସଂସାର, ଏହି ତାର ଜୀବନର ସାର୍ଥକତା ।

ବଣିଙ୍ଗ ଲଟେକାଇ ଯାଇ ସେହି ବନ୍ଧନରୁ ନିଜକୁ ମୁକ୍ତ କଲା । ଆଖିରେ ତାର ସେଇଁ ଭାଷା । ଇସ୍……! ସେ ଚେତେଡ଼ି ସୁନ୍ଦର ଦେଖାଯାଉଛି ସତରେ । ଗୁଲବି ଆଉ ଦୁଲବି ବାପାର ଆଗମନୀ ବାର୍ତ୍ତା ପ୍ରଚାର କରିବାକୁ ଧାଇଁ ଧାଇଁ ଦାଣ୍ଡକୁ ବୁଟିଗଲେ ।

ବଣିଙ୍ଗି ଆଉ ଗୃରୁଆ ନୀରବତରେ ଏକ.ଠି ହେଲେ—ବଣିଙ୍ଗି ଗୃରୁଆକୁ ଗୃହୁଁଥିଲା ଆଉ ଗୃରୁଆ ବଣିଙ୍ଗିକୁ ଗୃହୁଁଥାଏ—ମୁହଁର କଥାଠାରୁ ଗୃହାଣୀର ଭାଷା ଅତ୍ୟନ୍ତ ବଳିଷ୍ଠ । ମୁହଁରେ କଣ ଏତେ କଥା କହି ହୋଇ ପାରନ୍ତା ? ସେ ଗୃହାଣୀ ନୁହେଁ ଯେ ପାଞ୍ଚଟି ବର୍ଷର ବିରହ ବ୍ୟଥାର କାହାଣୀ । ତହିଁରେ ପ୍ରଣୟର ରାଗିଣୀ ଥିଲା—ଆଉ ହୃଦୟର ଗୋପନ ବାଣୀ ଥିଲା ।

"ମୁଁ ମନେ କରୁଥିଲି ନାଁ ? ମାନିଲୁ ନାହିଁ । ଏଦଶା କିଏ ହେଇଗଲା କହିଲୁ ?" ବଣିଙ୍ଗି ପଚାରିଲା ।

"ଇଏ ଦଶା ନୁହେଲେ ବଣିଙ୍ଗି । ଇଏ ପରୀକ୍ଷା ପରା । ମନର ଆଉ ଦେହର । ଦୀର୍ଘ ବିଚ୍ଛେଦ ପରେ ଏ ଅପୂର୍ବ ମିଳନ କେମିତି ଲାଗୁଛି କହିଲୁ ?"

"ଯାଃ ସବୁବେଳେ ଖାଲି ସେହିକଥା । ବାହା ହେବାର କେତେବର୍ଷ ହେଲା କହିଲୁ ? ତଥାପି ଦୁଷ୍ଟାମୀ ଯାଇନାହିଁ ?"

ସାତବର୍ଷ ଭିତରୁ ପାଞ୍ଚବର୍ଷ କଟିଲା ପରବାସରେ—ଦୁଇବର୍ଷ ଦୁଇଟି ମୁହୂର୍ତ୍ତ ଭଳି କଟିଗଲା—ଆଚ୍ଛା କହିଲୁ ବଣିଙ୍ଗେ ମୁଁ କଣ ମନେ ପଡ଼ୁଥିଲି ?"

"ସେ କଥା କହନାହିଁରେ ଗୃରୁଆ—ପୁନେଇ ଜହ୍ନରେ ଜୁନ ଧଳା ଆଲୁଅ ମୋର ଲୁହର ସାକ୍ଷୀ । ଆଷାଢ଼ ମାସର କଦମ୍ବଫୁଲ ମୋ କ୍ରନ୍ଦନର ନୀରବ ଦର୍ଶକ । ଅଧରାତିର ଚେଗ୍ରାର ନାଦ ଶୁଣିଗଲେ ମୁଁ ଚେଇଁ ଉଠି ଓଜଳିଆ ମେଘ ଆଉ ସରସ ମାଟିକୁ ଗୃହେଁ—ବଣେଇ ପାହାଡ଼ ଆଉ ଖୋଲପବନ ଖିଲି ଖିଲି

ହୋଇ ବନୁଥାଏ । ନିଦଭଙ୍ଗା ଚଢ଼େଇର ଡେଣାଝଡ଼ା ଚଢ଼ ଜାନ
ପାଖରେ ପିଟି ହେଉଥାଏ—ଠିକ ସେତିକ ବେଳେ ତୁ ଖାଲି
ମନେ ପଡୁଚରେ ଶୁଭୁଆ --ମୋ ଆଖିରୁ ନିଦ ଛଡ଼ାଇଦେଇ
ମୋତେ ଖାଲି ଦହଗଞ୍ଜ କରୁ । ମୁଁ ମୋର ଭିତରେ ତୋତେ ହିଁ
ଖୋଜି ହୁଏ---ଆଜି ବର୍ଷାମାଝରେ ସେଇ ଝୁମୁଝୁମିଆ ଆବାଜ୍ !
ମୁଁ ଭାବେ । ମୋତେହିଁ ଦହଗଞ୍ଜ କରିବାକୁ ତୁ ଏହି ଟରବ
ବର୍ଷା ଭିତରେ ଛପି ଛପି ଡାକୁଛୁ ।"

ବଡ଼ଙ୍କି ବାସନ ମାଜୁଥାଏ ।

ଗୁଲବୀ ଏଇ ସାଙ୍ଗେ ସାଙ୍ଗେ ଗଣ୍ଡେ ପଖାଳ ଖାଇଦେଇ
ଗାଡ଼ିକାମକୁ ଚାଲି ଯାଇଛି । କାମସାରି ଫେରିଲା ବେଳକୁ ରାତିଅଧ
ହେବ ।

ବଡ଼ିଲା ଝିଅ ଗୁଲବୀ । ରାତି ଦିନ ଖଟୁଛି । ବାପ ନାହିଁ ଯେ
ଆଧାର ଖୋଜି କୁଟୁମ୍ବ ମୁହଁରେ ଦେବ । ନିଜେ ନ ଖଟିଲେ ବଞ୍ଚିବେ
ପୁଣି କେମିତି ?

ପ୍ଲାଣ୍ଟ ଏରିଆର ରୂପାଢ଼ଳା ବିଜୁଳିଆଲୁଅ ବିସ୍ତାରି ହୋଇ
ପଡୁଛି ଯୋଜନବ୍ୟାପୀ । ରାତି ଆଉ ଦିନର ପ୍ରଭେଦ ଜାଣି
ହେଉନାହିଁ । ପ୍ଲାଣ୍ଟ୍ ଭିତରକୁ ପଶିଯାଇଥିବା ରାସ୍ତା ଉପରେ
ଅଗଣ୍ୟ ଲୋକ ଭିଡ଼ । ପୋଲ ଏ ପାଖର ଅସ୍ଥାୟୀ ଶ୍ରମିକ ପଲ୍ଲୀ
ନିସ୍ତୁଟିଆ ହୋଇଗଲଣି । ଉପରଓଳି ଚାରିଟାଠାରୁ ସାତଟା ଯାଏ
ଡିଉଟି ଚାଲିଥିଲା । ଏବେ ରାତି ଡିଉଟିର ସମୟ ହୋଇ
ଯାଇଥିବାରୁ ପୁଣି ନିସ୍ତୁଟିଆ ଲାଗୁଛି । ରାତି ଦଶଟା ପରେ ଶ୍ରମିକ

ପଲ୍ଲୀର ପ୍ରତ୍ୟେକ କୁଡ଼ିଆ ପୁଣି ଥରେ ଗହଳ ହେବ । ଖାଇବା, ଶୋଇବା ଓ କାମ କରିବା ଏହି ତିନୋଟି ଜିନିଷହିଁ ଯେମିତି ଏ ପଲ୍ଲୀର ଜୀବନ ଦର୍ଶନ । ମଉଜ ନାହିଁ କି ମଜଲିସ ନାହିଁ । ଖାଲି ହାଡ଼ ଭଙ୍ଗା କାମ ।

ବରିଙ୍ଗିର ମନେ ପଡୁଥିଲା ସାତବର୍ଷ ତଳର ଅତୀତ । କେଡ଼େ ସୁନ୍ଦର ଆଉ ସରସ ! ସେତିକି ବେଳର ସଉକ ଆଉ ନାହିଁ । ମନଭିତରୁ ପୁଣି ଟିକିଟିକି କରି ମରିଯାଉଛି । ଖାଲି ଚଢ଼ଉଛି ଦରମରା ଶରୀର ଆଉ ତାର ଭିତରର ସୁକୁସୁକିଆ ଜୀବନ । ଜାଣିଥିଲା ଯାଏ ଶରୀରକୁ ବଂଚାଇବାକୁ ହେବ । କିନ୍ତୁ ବଞ୍ଚିବାର ଆଗ୍ରହ ଆଉ ନାହିଁ—ଆଶା ଥିଲେ କି ଆକର୍ଷଣ ଥିଲେ ମଣିଷ ପିନା ବଞ୍ଚିବାକୁ ଭଲପାଏ । ଗୋଟିଏ ଅଦେଖା ମୋହ ପଛରେ ଗୋଡ଼ାଇ ହୁଏ ମନ । ପ୍ରାପ୍ତିର ଆଶା ଚିତ୍ତକୁ ଚଞ୍ଚଳ କରେ । ନ ପାଇଲେ ଦୁଇଗୁଣ ସାହସ ହୁଏ---ପୁଣି ସେ ଅଭିଳାଷ ପଛରେ ଗୋଡ଼ାଏ—ଅଭିଳାଷ ଦୂରେଇ ଯାଇଥାଏ, ଆଉ ମଣିଷ ଅଣନିଶ୍ୱାସୀ ହୋଇ ଗୋଡ଼ାଉ ଥାଏ । ବଞ୍ଚିବାର ବାସନା ପ୍ରବଳ ହୋଇଯାଏ ।

ବଟଙ୍ଗି ଲଙ୍ଗଳା ହୋଇ ବୁଲୁଥିବା ଯାଏ ତାର ମନରେ ମାୟା ନଥିଲା କି ମୋହ ନଥିଲା । ଭୋକ ଲାଗିଲେ ମାଆ ବାପାକୁ ଯାଇ ଖାଇବାକୁ ମାଗୁଥିଲା । କୁଡ଼ କୁଡ଼ ଧୂଳି ଜମାଇ କେତେ ରକମର ଖେଳଘର କରୁଥିଲା । ଗଛଲତା ସଙ୍ଗରେ ଚୁପ୍ ଗୁମ୍ କଥାଭାଷା ହେଉଥିଲା । ପାଣି ପବନ ଥିଲେ ତାର ଖେଳସାଥୀ । ଡାଳକୁ ଭଳି ଫୁଲ ଜମାଇ ଧୂଳିଘରର କାନ୍ଥ କରୁଥିଲା·········

ସେଦିନ ଗଡ଼ିଯାଇଛି । ଦିନ ଆସିଲା—ଯେଉଁଦିନ ସେ ପରିବାରର ହାଲୁକା ଦାୟିତ୍ୱ କେତୋଟି ହାତକୁ ନେଲା । ଖୋଚଖଚା, ଝଗଡ଼ା ଦେଖାଠାରୁ ତେଲ ତରି ଯାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ

ଦାୟିତ୍ୱ ବଢିଚାଲିଲା । ହେଲେ ସେ ଗୋଟିଏ ସୂନେଲୀ ସକାଳରେ ଅନୁଭବ କଲା ତାର ଅନେକ ପରିବର୍ତ୍ତନ ହୋଇ ଯାଇଛି । ଲଜ୍ଜାରେ ମୁଣ୍ଡଟେକି ପାରିଲାନାହିଁ । ପରିବର୍ତ୍ତନ ନୂତନ ହୋଇ ଆସିଥିଲା । ଦେହସର୍ବା ହେଲାବେଳକୁ ସେ ଲଜ୍ଜା ଆଉ ରହିଲା ନାହିଁ । ଝୋଲାର ଆଉ ପାଞ୍ଚଣ ବୟସୀ ଝିଅ ଭଳି ସେ ମଧ୍ୟ ହସିଲା, ଖେଳିଲା ଓ ଗୀତ ଗାଇଲା । ତର୍କିଚ ଗାଁଆ ଗୋଟିଏ ନୂଆ ବଟିଙ୍ଗିର ଉପସ୍ଥିତି ଅନୁଭବ କଲା । ବଟିଙ୍ଗି ସମବୟସୀ ଝିଅମାନଙ୍କ ମଧ୍ୟରୁ ଅଧିକ ଚଞ୍ଚଳ, ଅଧିକ କର୍ମଠ ଥିଲା । ଦେହରେ ରଙ୍ଗୀନ ଯୌବନ ଉଚ୍ଛଳା ଖାଉଥାଏ—ତର୍କିଚର ନୂଆ ତରୁଣ କେଇଟି ଉପରେ ବଡ଼ ରଙ୍ଗ-ରହସ୍ୟ ଆରମ୍ଭ କରିଦେଲେ ।

ବଟିଙ୍ଗି ଆଉ କଣ ପଗୃରିବ ?

ବଟିଙ୍ଗିର ମନ ତ ଯାଇ ସରଗରେ······

ବଟିଙ୍ଗି ! ସତରେ ତୁ କଣ ଆମ ହାଥିରେ ଆଉ କଥା ହେବୁନି ?

କାହିଁକି ହେବନି ? ବଟିଙ୍ଗି ହସି ହସି ଜବାବ ଦିଏ ।

କାହିଁ ତୁ ତ ଆଉ ଆମ ସଙ୍ଗରେ ଆଗର ଭଳି ମିଶୁନୁ ? ଆଡ଼େଇ ଆଡ଼େଇ ଗୃଲୁଛୁ । ସତେ ଯେମିତ ଆମେ ତୋର କେହି ନୋହୁ । ଆମ ସଙ୍ଗରେ ଖେଳିବୁନି ବଟିଙ୍ଗି ?

କି ଖେଳ ଖେଳିବା କହିଲୁ ?

ଛୁ---ଛୁଉଁକା ଖେଳ । ଆମେ ଲୁଚିବୁ---ତୁ ଖୋଜିବୁ-ନ ହେଲେ---ତୁ ଲୁଚିଲେ ଆମେ ଖୋଜିବୁ । ଧରା ପଡ଼ିଲେ ତୁ ରାଣୀ ହେବୁ । ଆମେ ସବୁ ରଜା ହୋଇ ତୋର ଉପରେ ହାକିମୀ ଚଳାଇବୁ ।

ଆଉ ଯଦି ଧରା ନ ପଡ଼େ ? ବଟିଙ୍ଗି ପଗୃରେ !

ଆରେ ସଚେତ ! ବଉଙ୍ଗିର ଅନେକ ବୁଦ୍ଧି । ସେ ଫନ୍ଦ-
ସନ୍ତରେ ଧରା ନପଡନ୍ତି—ରଙ୍କା ହେବ କିଏ, ଆଉ ରାଣୀ ହେବ
କିଏ ? ସାଙ୍ଗ ଯୁବକମାନେ ମୁହଁ ବନ୍ଧ ତୃଷ୍ଣା ହୁଅନ୍ତି । ବଉଙ୍ଗି
ଉତ୍ତର ନ ପାଇ ଫେରି ଯାଏ । ଓ୍ୱାଂ ସଙ୍ଗୀତ ତରୁଣ ବୃନ୍ଦ
ଦେଖନ୍ତି, ବଉଙ୍ଗି ସାମାନ୍ୟ କଥାରେ ସେମାନଙ୍କୁ ହସାଇ ଦେଇ
ଚାଲିଗଲା । ବଉଙ୍ଗିର କମନୀୟ ରୂପ-ଯୌବନ ସେମାନଙ୍କ ଆଖିରେ
ସ୍ୱପ୍ନ ବାଢ଼େ ।

ବଉଙ୍ଗି ସେ ଅଞ୍ଚଳରେ ଅନେକ ନାମଜାଦା । ତାର କଥା,
ତାର ଚାଲିଚଳନ ପାଞ୍ଚଣ ଝିଅଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା
ଧରଣର ।

ତା କଥାରେ କମିଆ ଅଛି—ଜଣେ କହିଲା ।

ତା ରୂପରେ ମୋହିନୀ ଅଛି—ଆଉ ଜଣେ କହିଲା ।

ଧାଙ୍ଗଡ଼ା ଧାଙ୍ଗିଡ଼ୀ ନାଚନ୍ତିଲେ ବଉଙ୍ଗିକୁ ଡାକରା ପଡ଼େ
ପ୍ରଥମେ । ବଡ଼ ଝିଅମାନେ ବି ବଉଙ୍ଗି କଥାକୁ ପସନ୍ଦ କରନ୍ତି—
ବଉଙ୍ଗି ମୁଖିଆ ଝିଅ ହୋଇ ପାଦରେ ଘୁଙ୍ଗୁର ବାନ୍ଧେ—ଖୋଷାରେ
ମୟୂର ଚନ୍ଦ୍ରିକା ଲଗାଏ । ବାଦଲ ନୃତ୍ୟର ତାଳେ ତାଳେ ସେ
ମୁଖ୍ୟ ଧାଙ୍ଗିଡ଼ୀ ହିସାବରେ ଅନ୍ୟ ସମସ୍ତ ଓ୍ୱାଂ ଧାଙ୍ଗିଡ଼ୀଙ୍କର
ପାଦର ତାଳକୁ ନିୟନ୍ତ୍ରଣ କରେ । ସେ ଯେଉଁ ଗୀତର ଲହର
ଧରେ—ତାହା କାହାର ଓଠରେ ଫଳନ୍ତି ନାହିଁ । ସେ ଯେଉଁ ତାଳ
ଧରାଏ ତାହା ସବୁ ଓ୍ୱାଂ ଝିଅଙ୍କ ପକ୍ଷରେ ନୂଆ । ବଉଙ୍ଗି ଦଳ
ଦେଇ ଜଲି ନାଚେ—ପଣତ କାନିକୁ ବାଟେଇ ବାବେ ଚହଲାଏ ।
ଆଖି ପତାକୁ ଟେକେଇ ଟେକେଇ ଉଡ଼ୁଥାଏ । ମାଦଳ ବାଜିଲେ ପଦ-
ତାର ଚହଲି ଉଠେ— ସେ ମାତାଲ ଭଳି ନାଚେ । ... ଜୀବନ
ଯୌବନ ଅନେକ ମୂର୍ଚ୍ଛନା ସୃଷ୍ଟି କରେ । ତାର କୁଞ୍ଚିତ କୁନ୍ତଳ
ଦେହ ମୁହଁର ଢଳ ଢଳ ଯୌବନ ସମସ୍ତଙ୍କ ... ଆଖିରେ

କାମନାର ନିଶା ଢ଼ାଳିଦିଏ । ବୟସୀ ଝିଅମାନେ ତାର ଏହି ଅପୂର୍ବ ପାରଦର୍ଶିତାରେ ଈର୍ଷାନ୍ୱିତା ହୁଅନ୍ତି । କିନ୍ତୁ ବିରଙ୍ଗିର ହସିଲା ମୁହଁର ମିଠାକଥା ସେମାନଙ୍କୁ ବିମୁଗ୍ଧ କରେ । ବିରଙ୍ଗି ଭଳି ସାଥୀ ପାଇ ସେମାନେ ମୁଣ୍ଡିଅରେ ଗର୍ବ ଅନୁଭବ କରନ୍ତି ।

ବିରଙ୍ଗିର ବାପ ଗର୍ବରେ ଫୁଲିଯାଏ । ସବୁରି ମୁହଁରେ ବିରଙ୍ଗିର ପ୍ରଶଂସା ଶୁଣି ଅନ୍ତର ତା'ର ଫୁଲି ଉଠେ । ଝିଅ ପିଲଟିଏ ହୋଇ ବିରଙ୍ଗି ପୁଅର ପ୍ରଶଂସା ନେଉଛି । ବିରଙ୍ଗିକୁ ବାହାହେଲେ କି କି ଯୌତୁକ ପାଇବ, ତାର ଗୁପ୍ ଚୁପିଆ ତାଲିକା କରିବସେ । ଅନ୍ତ କମରେ ହଳେ ବଳଦ, ଗଣ୍ଡେ ଛେଳି ଦାବୀ କରିବ । ବିରଙ୍ଗିର ଯିଏ ସ୍ୱାମୀ ହେବ—ସେ'ତ ପୁଣି ଧନୀ ହେବା ଦରକାର ।

ତର୍କଘର ଓରାଂ ତରୁଣମାନେ ବନଦେବତାର ପୂଜା କରନ୍ତି । ପରସ୍ପରର ଅଜାଣତରେ ବିରଙ୍ଗିର ଜୀବନସାଥୀ ହେବାକୁ ବନଦେବତାର ଆଶୀର୍ବାଦ ମାଗନ୍ତି । ମୁଣ୍ଡରେ ମୁହଁରେ ଅଧିକ ଜଡ଼ାତେଲ ଢ଼ାଳି ବଙ୍କେଇ ବଙ୍କେଇ ଦେହ ଝାଡନ୍ତି । କାନ, ବେକରେ ବଣମାଳତୀ, ବଣମଲ୍ଲୀ ଓ କୁରେଇ ଫୁଲର ସୁବାସ ଫୁଲ ମଣ୍ଡି ହୁଅନ୍ତି । ବିରଙ୍ଗି ଘର ସାମନାରେ ପାହିକରି ହସନ୍ତି । ବିରଙ୍ଗି ଏହି ତରୁଣ ମନର ଆବେଗ ଆଉ ଆକର୍ଷଣକୁ ଠିକ ଭାବରେ ବୁଝେ । କିନ୍ତୁ ମନ ତାର ମାନେ ନାହିଁ । ସେ କଣେଇ ହୋଇ ନଜାଣିଲା ଭଳି ଚୁପ୍ ରହେ ।

ଜାନମ୍ କହୁଥିଲା ସେ ବାହାହେଲେ ତୋତେଇ ବାହାହେବ । ତାକୁ କି ମନ୍ତ୍ର କରିଛୁଲେ ବିରଙ୍ଗି ? ଜାନମ୍‌ର ଅବାଧ୍ୟା ଭଉଣୀ ବିରଙ୍ଗିକୁ ଚୁପ୍ ଚୁପ୍ ପଚାରେ ।

ମୁଁ ତ ବନଦେବତା ପୂଜୁନା ଯେ ମନ୍ତ୍ର ଶିଖିବ ? ବିରଙ୍ଗି ହସି ହସି ଉତ୍ତର ଦିଏ ।

ସତେଲେ ବଉଙ୍ଗି । ଜାନମ୍ ତୋରପାଇଁ ବନଦେବତା ହୁଛୁ ।

ସତେ ନା କଅଣ ?

ଅବିଶ୍ୱାସ ଲାଗୁଛି ? ଦେଖିବୁ ଚାଲୁନୁ ଆମ ଘରକୁ । ଜାନମ୍ ତୋତେ ଦେଖିଲେ ଖୁବ୍ ଖୁସି ହବଲେ ବଉଙ୍ଗି !

ସେ କଣ ମନ୍ତ୍ର ଶିଖିଛି ?

ମନ୍ତ୍ର ଶିଖିଥିଲେ ତୁ କଣ ଆଉ ଅବିବାହିତା ରହିଥାନ୍ତୁ ? ତୁ ଯେଉଁ ମନ୍ତ୍ରଶିଖି ଚର୍କବିର ସବୁ ଧାଙ୍ଗଡ଼ାଙ୍କୁ ବଶ କରିଛୁ— ମୋତେ ସେଥିରୁ ଦି'ପଦ ଶିଖାଇ ଦେବୁନୁ ?

ସେ ମନ୍ତ୍ର ଭାରି କଡ଼ାଯେ !

ତଥାପି ଶିଖିବି ବଉଙ୍ଗି !

ଓଲଟାଇ ନ ପାରିଲେ ମୂର୍ଚ୍ଛା ଯାଇ ମରିବୁ ।

ମରିବି ପଛକେ ଶିଖିବି । ଏମିତି ଜୀବନ ଧରି ଉହ୍ନକ ବାଉଳା ହେବା ଅପେକ୍ଷା ମରିଯିବା ଭଲ । ତୋର ପାଇଁ ଦୁନିଆ ବାଇ— ଅଥଚ ଆମକୁ କେହି ପଚାରୁ ନାହିଁ । ଠିକଏ କହୁ ଦିଅନ୍ତୁ କ ?

ବଉଙ୍ଗି ହସେ । ହସି ହସି କହେ ଭାଇ ଭଉଣୀ ଦିହା ବନଦେବତା ପୂଜିଲେ—ସେ ତୁମକୁ ମନ୍ତ୍ର ଶିଖାଇ ଦେବ ।

ଜାନମ ଓରାଙ୍ଗର ଭଉଣୀ ମୁହଁ ଫଣ ଫଣ କରି ଫେରିଯାଏ ।

ଏତେ ରୂପ ଏତେ ଯୌବନ ଲୁଆଡ଼େ ଗଲା ସବୁ ? ବଉଙ୍ଗି ଦେହକୁ ମୁହଁକୁ ନିଠେଇ ନିଠେଇ ଚାହେଁ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଦେହର ଆଭା ମହଲିଆ ପଡ଼ି ଆସୁଛି । ଓଠ ଦି'ଟାରେ ସେମିତି ଖୋଲା ହସ ବି ଆଉ ଝରୁ ନାହିଁ । ହସିଲେ ମଧ୍ୟ ସେ ହସର ପ୍ରତିଦାନ ଦେବ କିଏ ସେ ? ନେବାଲୋକ ତ ପାଖରେ ନାହିଁ । କାହାପାଇଁ ସେ ବେଶ ହେବ ? ଲୁଲୁସି କହୁଥିଲା ସିଏ ଦେହ ମୁଣ୍ଡର ହେପାଜତ ନେଉ ନାହିଁ ବୋଲି, ବେଗିଣୀ ଭଳି ଦେଖା ଯାଉଛି ।

ବରଂ ବୈରାଗିଣୀ ଭଳି ଉଦାସିଆ ହୋଇ ଚାଲିବା ଭଲ । ନ ହେଲେ ଗାଉଁଲି ଲୋକଙ୍କର ଏ ଯେଉଁ ଡାକୁଣୀ ମଣିଷ ! ରହ ରହ ଖଣ୍ଡିକାଏ ମାରିବେ—ପିଇଗଲ ଭଳି ଅନାଇବେ । ଘରପାଖରେ ଭିଡ଼ିବଡ଼ିବ । ଗୁରୁଆ ନାହିଁ ଯେ ସାହାହେବ । ଘରେ ଦୁ' ଦୁଇଟା ବଡ଼ିଲ ଝିଅ—ମାନଙ୍କୁ ପୁଣି କେଉଁ ଘରଦ୍ୱାରେ ବେଶ ହେବ ? ଯାହା ପାଇଁ ବେଶ, ସେ ତ କଥା ନ ମାନି ରହିଲ ଦୂର ଦୂରାନ୍ତରେ ।

ବେଳେବେଳେ କାଲୁଆ ରାତିରେ ନିଝୁମ ପହରରେ ମନେ ପଡ଼େ ଗୁରୁଆ । ତାର ସୁନ୍ଦର ସୁଗୋଲ ମୁହଁ—ସରୁଆ ମୁନିଆ ନାକ, ଗହଳ ଭୂରୁତଳର ବହଳ ଢଳ ଢଳ ଡୋଳା, ବଳିଷ୍ଠ ଗୁଡର ଓସାରିଆ ରୂପ ସବୁ ମନେପଡ଼େ ଗୋଟି ଗୋଟି ହୋଇ । ବେଳେ ବେଳେ ଅଦିନିଆ ମେଘରୁ ବର୍ଷା ଝରିଲେ ଗୁରୁଆ କାମକୁ ଯାଏ ନାହିଁ । ଆଳସିଆ ହୋଇ ଦଉଡ଼ିଆ ଖଟରେ ଘୁମାଉ ଥାଏ—ଆଉ କଣେଇ କଣେଇ ଆନାଉ ଥାଏ । ସେ ଗୁହାଳୀଟିରେ କେତେ ସ୍ନେହ, କେତେ ସୋହାଗ । ବଉଙ୍ଗି ମନ ଥାଇ ବି ହାତଛୁଡ଼ା ହୁଏ । ବେଳେ ବେଳେ ଅସତର୍କରେ ତାର ଓହଳ ଶାଢ଼ୀକୁ ଭିଡ଼ି ଧରେ ଗୁରୁଆ । ଗୋଟାପଣେ ମୁକୁଳା ହୋଇଯାଏ ବଉଙ୍ଗି—ଗୁନିଆ ଆଖିରେ କୃତ୍ରିମ ରାଗ ଦେଖାଇ ଗୁରୁଆକୁ ତାଗିଦ୍ କରେ । ଗୁରୁଆ ମାନେ ନା । କହେ, ତୁ ରାଗିଲେ କେଡେ ସୁନ୍ଦର ଦିଶୁଲେ ବଉଙ୍ଗି ! ବଉଙ୍ଗି ରାଗିପାରେ ନାହିଁ । ରାଗିଲା ମୁହଁରୁ ହସ ଝରେ ।

ଛି, ତୁଟା ଏମିତକା । ଲାଜ ମାଡ଼ୁନାହିଁ ?

ଲାଜ ! ମରଦ ପିଲାର ଲାଜ । ଦେଲୁ ଦେଲୁ ସେ ପାଲଟା ଶାଢ଼ୀଟା ! ମୁହଁରେ ମାରି ଶୋଇପିବ ।

ବଉଙ୍ଗି ଛୁପା ଶାଢ଼ୀଟା ଗୁରୁଆ ଦେହ ଉପରକୁ ଫିଙ୍ଗି ଦେଇ କହେ, ନେ ପିନ୍ଧ ଆଉ ଚୁପ ହୋଇ ଶୋଇ ଯା ।

ଗୃହୁଆ ଧଡ଼ପଡ଼ ହୋଇ ଉଠି ସେ ଶାଢ଼ୀଟା ନିହାତି ବେଢ଼ିଆ ଭାବରେ ପାଲଟି ପକାଏ । ମୁଣ୍ଡ ଉପରଙ୍କ ଓଢ଼ଣା ଉଡ଼ାନେଇ ଚୂପ୍‌ଚୂପ୍ କହେ, ହେଲା ଏଥର ?

ଗୃହୁଆ ସେ ଛାପା ଶାଢ଼ୀରେ କେମିତଙ୍କା ଅଦାଗିଆ ଦିଶେ ; ନାକ ତଳର ସେହି ନିଶ ଦି’ ଧାଡ଼ିକ ଅଧିକ ସ୍ପଷ୍ଟ ଅଧିକ ସୁନ୍ଦର ଦେଖାଯାଏ । ଆଖି ଆଉ ମୁହଁରେ ମାଇପି ଲୋକର ଅଭିନୟ କରେ !

ବଇଗିଙ୍କୁ ଗୃହୁଆର ଏହି ନିର୍ଲଜ୍ଜ ରହସ୍ୟ ଅଧିକ ଆନନ୍ଦ ଦିଏ ! ଗୃହୁଆର ଏ ବେଶ, ଏ ଅଭିନୟ ଦେଖିଲେ କିଏ କହିବ ସେ ଦୁଇଟି ଝିଅର ବାପ ବୋଲି ! ମନେହୁଏ ଗୃହୁଆ କେବେହେଲେ ବାହା ହୋଇ ନ ଥିଲା । ନୂଆକରି ମାଇକିନା ଝିଅ ସଙ୍ଗରେ ପରିଚିତ ହେଉଛି ।

ଏବେ ଏହି ସୁଦୀର୍ଘ ବିଚ୍ଛେଦ ଭିତରେ ବଇଗି ମନେ ମନେ ଭାବୁଛି, ଗୃହୁଆକୁ ସେ ଅତିଶୟ ଭଲ ପାଉଥିଲା । ସେଇଥିପାଇଁ ତାର ଅନୁପସ୍ଥିତି ଅସହ୍ୟ ହୋଇ ଉଠୁଛି । କଣ କରୁଥିବ ଗୃହୁଆ ? ଘରେ ଥିଲାବେଳେ ନିଜ କଥା ନିଜେ ବୁଝି ନ ଥିଲା । ସବୁବେଳେ ତାର ହାତକୁ ଅନାଇ ଥାଏ—ଏବେ ତାର ଭଲମନ୍ଦ ବୁଝୁଥିବ କିଏ ସେ ? ଆଗର ସେହି ସୁନ୍ଦର ସ୍ୱାସ୍ଥ୍ୟ ତାର ଥିବତ ?

ବଇଗି ଆକାଶକୁ ଅନ୍ୟମନସ୍କ ଭାବରେ ଅନାଏ—ପୁଣି ବଣେଇ ପାହାଡ଼କୁ ମୁହଁ ଫେରାଇ ଅସ୍ପଷ୍ଟ ଭାବରେ ପ୍ରାର୍ଥନା କରେ, ହେ ବନଦେବତା ! ମୋର ଦେବତାକୁ ସୁଖରେ ରଖ ! ତାର ଦେହ ମୁଣ୍ଡର ତତ୍ତ୍ୱ ନିଅ ।

ଗୃହୁଆ ଅକାରଣଟାରେ କୁଟିଖାରେ ପଡ଼ି ବିଚ୍ଛୁବରେ ମାଡ଼ଲା—ସରକାର ଆଗରେ ଝାଣ ଦେଖାଇଲା । ଯିଏ ଯୁଆଡ଼େ ଥିଲେ ସୁବିଧାରେ ଖସିଗଲେ । ଧରାପଡ଼ିଲା କେବଳ ସେଇ ।

ପାଞ୍ଚ ବର୍ଷ ସଜା ହେଲା ଅଦାଲତରେ । ବଶଙ୍କି ମନଭରି କାନ୍ଦିଲା । ଭଗ୍ୟ ଉପରେ ଦୋଷ ଦେଇ କପାଳ ଆଦରି ପଡ଼ିରହିଲା । ସକାଳ ପାହିଲେ କାନ୍ଥରେ ଚୂନଗାର ଟାଣେ—ଦୀର୍ଘନିଶ୍ୱାସଟିଏ ଛାଡ଼ି ମନକୁ ମନ କହେ ଗୋଟିଏ ଦିନ କଟିଗଲା । ଏମିତି ଗୁରେଟି ବର୍ଷ ବିତିଗଲା । ପାଞ୍ଚବର୍ଷର ସଜା ସରିବାକୁ ଆଉରି ବର୍ଷେ ବାକି । କେମିତି କଟିବ ଏ ଦିନଗୁଡ଼ିକ ?

ପୁଣି ଏ ଗୁଲବୀ ଓ ଦୁଲଣୀର ତ କିଛି ବ୍ୟବସ୍ଥା କରିବାକୁ ହେବ । ଗୁଲବୀ ଅନେକ ବଢି ଯାଇଛି । ଝିଅଟିଲର ବୟସ— ଦିନ ଗଣୁ ଗଣୁ ବୁଢ଼ୀ । ପୁଣି ଦୁଲଣୀ ? ସିଏ ବ ଉଚ୍ଚତାରେ ଗୁଲବୀ ସଙ୍ଗେ ମିଶିଗଲାଣି । ମନ ଗୁଲବୀଠୁଁ ଆହୁରି ପକ୍କା ହେଲାଣି । ଦିନକୁ ଦିନ ନୂଆ ବେଶଭୂଷଣ ହେବାକୁ ମନ । କେଉଁଠୁ ଏ ଶିକ୍ଷା ପାଇଲା କେଜାଣି ? ଯେତେବେଳେ ଦେଖିବ ଛନଛନ । ବଢିଲା ଝିଅର ଲଜ୍ଜା ସରମ ନାହିଁ—ଝିଅ ନହୋଇ ପୁଅଟିଏ ହୋଇଥିଲେ କଣ ଘରିଥାନ୍ତା ଦୁଲଣୀ ? ଘରକୁ ଦୁଏତ ବାର ବଦନାମ ଆଣନ୍ତା । ଝିଅ ଟିଲଟିଏ ବୋଲି ଚଳି ଯାଉଛି । ତା'କଥାକୁ କଣ କାନକୁ ନଉଛି ? ବାପ ଆସିଲେ କହିବ, ପିଲାଟାକୁ ବଢ଼ାଇ ଦେଲା । ଆଜିଠୁ ସିନା ଛାଡ଼ିବ । ଆଜିଠୁ ନମାନି କଲାକଲେ କିଏ ସମ୍ଭାଳିବ ? ପର ପାଁଜଣ କୁହିବେ । କହିବେ ଥାବତ ଝିଅକୁ ସହି ନ ପାରି ବକୁଛି ।

ଦୁଲଣୀର ଉଛୁଳା ମନରେ ପର ଲଗିଛି । ଯୌବନ ନିଶାରେ ଟୁକୁଟୁକୁ ହେଉଛି । ପାଦ ସମାନରେ ପଡୁନାହିଁ । ଯେତେବେଳେ ଛେଚୁ ଖାଇବ ବୁଝିବ । ପୁଣି ଅସ୍ଥ ହେବ ।' ବାପ ମାଆର କଥା କାନକୁ ନେବ । ଅତୀତପାଇଁ ଅନୁତାପ କରିବ । କିନ୍ତୁ ଦୁଲଣୀ ଯଦି ବାଟକୁ ନ ଫେରେ ? ବଶଙ୍କି ଦୁଲଣୀ କଥା ଭାବିବାକୁ ଭୟ କରେ । ତାର ଭବିଷ୍ୟତ ଚିନ୍ତା କଲାବେଳେ ଅଟକି ଅଟକି ଯାଏ ।

ଆଉ ଗୁଲବୀ ! ଓ ୀଂ ଛାଡର ମଣିଷଟିଏ । ନିଜର ଛାଡ ନ ହୋଇ ଯଦି ବଡ଼ଲୋକ ଘରେ ଜନମ ହୋଇ ଥାଆନ୍ତା କେତେ ପ୍ରଶଂସା ପାଉଥାନ୍ତା । ପଙ୍କଗଦାର ପଦ୍ମଫୁଲଟିଏ—ଯାହା କୁହ ଶୁଣିବ, ଯାହା କୁହ କରିବ । ଗୁଲବୀ ଏ ଘରର ଏକମାତ୍ର ଗର୍ବ । ବଡ଼ଙ୍ଗି ଗୁଲବୀ ଭିତରେ ଗୃରୁଆର ସନ୍ଧାନ ପାଏ । ଗୃରୁଆ ନିଜ ଦେହର ରକ୍ତ ଖେଳୁଛି ଗୁଲବୀ ଦେହରେ । ତାର ଆଖିରେ, ମୁହଁରେ ଗୃରୁଆର ଭାଷା । ସେମିତି ସରସ, ସେମିତି ସୁନ୍ଦର ।

ଦୁଲଘିଟା ଏମିତି ହେଲା କାହିଁକି ? ଗୋଟିଏ ରକ୍ତ ଦୁଇ ଭାଗ ହୋଇଛି—ଗୋଟିଏ ଦେହର ମାଉଁସ ବାଣ୍ଟି ହୋଇଛି— ପିଠୁଆ ଉଠୁଆ ଭଉଣୀ । ବରଷକର ସାନ ବଡ଼—ଗୋଟିଏ ପେଟରୁ ଜନମ ହୋଇ ଏକା ପାଣି ପବନରେ ବଢ଼ିଲେ । ତାଙ୍କ ଭିତରୁ ସର୍ବଂସହଣୀ ଗୁଲବୀ ଆଉ ଅଭିମାନିନୀ ଦୁଲଘି । ଗୋଟିଏ ଖେତ ଭିତରର ଦୁଇଟି ଧାନ ଭିତରୁ ଗୋଟିଏ ନିଦା ଓ ଆଉଟା ଅଗାଡ଼ । ସୃଷ୍ଟିର ରହସ୍ୟକୁ ବଡ଼ଙ୍ଗି ବୁଝିପାରେ ନାହିଁ । ବନ- ଦେବତା ନଚୁଉଛି—ମଣିଷ ନାଚୁଛି । ଆରଣ୍ୟରେ ଭାବଭକ୍ତିରେ ଦେଖାଉର କଲ ବୋଲି ଦେବତା ସହିଲ ନାହିଁ । ଦୁଲଘି ଦେବତାର ଅଭିଶାପ ଭୋଗୁଛି ।

ପଲ ଆରପାଖେ ଖଣ୍ଡିକାଶ ଶୁଭିଲ । ହୁଏତ ଏହି ନିର୍ଜନ ମୁହୂର୍ତ୍ତିକୁ ଅପେକ୍ଷା କରିଥିଲ କିଏସେ । ନିସ୍ତବ୍ଧ ବାତାବରଣ ଭିତରେ ଅଭିସାର ଚାଲିଛି ।

ବଡ଼ଙ୍ଗି ମନେମନେ ଭାବିଲ ଆରସାହିରେ ରହେ କୁସୁମା । କୁସୁମା କେବେ କାମକୁ ଯାଏନି—ଅଥଚ ଖାଇବା ପିଇବାରେ ଅଭାବ ନାହିଁ । ଭଲକା ଭଲ ଶାଢ଼ୀ ସାୟା ପିନ୍ଧେ । ସାବୁନ ଫେଣରେ ମୁହଁଧୋଇ ଗୋଲାପୀ ପାଉଡ଼ର ଲଗାଏ । ବେକଟଲେ ଅତର ତେଲ ଢାଳିହୁଏ । ସଞ୍ଜହେଲେ ଅସ୍ଥାୟୀ ପଲ୍ଲୀଟି ହାଲୁକା

ଅତରର ମହାଣିଆ ସୁଗନ୍ଧରେ ଗୁହଁ ହୋଇଯାଏ—ଯେ ସୁଗନ୍ଧ 'କୁସୁମୀ' ଦେହଲଗା ଅତରର । ଏବେ କେଇ ଦିନ ହେଲା ନାଲିପୋଡ଼ା ହଳେ କିଣିଛି । ପିନ୍ ପିନ୍ ପାତଳ ଲୁଗାତଳେ ଧୂଳିଧକା ଅଙ୍ଗୀଖଣ୍ଡିକ ବାରି ବାରି ହୋଇଯାଏ । ଆଖିରେ କଜଳ, କପାଳେ କୁଙ୍କୁମ ଦିଏ । ବେକ ଗୋଟାକ ନକଲି ହାରରେ ଭର୍ତ୍ତି । ଆଲୁଅ ପଡ଼ିଲେ ଚକ୍‌ଚକ୍ ହୁଏ । ନ ଜାଣିଥିବା ଲୋକ ସୁନା ବୋଲି ଭାବିବେ । ସେଇ ସାଜ ଅଳଙ୍କାର ନେଇ କୁସୁମୀର ଗର୍ବ ଗର୍ବ ।

କୁସୁମୀ ଦୁଆରର କାରଖାନାର ମେକାନିକ୍ ଆଉ ଡ୍ରାଇଭର ମାନଙ୍କ ଅସମ୍ଭବ ଭିଡ଼ ଜମେ । ଯେତେକ ଯାକ ନୂଆ ହେଲପର୍ ଆସନ୍ତି—ସେମାନେ ପ୍ରଥମେ ପରିଚୟ ହୁଅନ୍ତି କୁସୁମୀ ସାଙ୍ଗରେ । କୁସୁମୀ ଖଡ଼ିରଟେଲରେ ଗୋଟିଏ ପରିଚିତ ନାଆଁ ହୋଇ ଗଲଣି । ଖଡ଼ିରଟେଲର ପାଣି ପବନ ସଙ୍ଗେ ମିଶି କୁସୁମୀ ଯେମିତି ଏକାକାର ହୋଇ ଗଲଣି । ଯେତେ ଅପରିଚିତ ଲୋକ ହେଲେମଧ୍ୟ ସେ ଲାଜ କରେନାହିଁ କି ଆଉଜୁଣୀ ରହେ ନାହିଁ । ହସ ହସ ମୁହଁରେ ସମସ୍ତଙ୍କ ସଙ୍ଗରେ ମିଶିଯାଏ । ଭଲକି ଭଲ ଛବି ରଖିଛି ପାଖରେ । ଆଉ ସେ ଛବି ଗୁଡ଼ିକ ? ଇସ୍ କେଡ଼େ ଲଙ୍ଗଳା ସବୁ ? କୁସୁମୀ କେମିତି ଏହି ମାନଙ୍କୁ ସେ ଛବି ଦେଉଛି । ତାର ଅନେକ ସଙ୍ଗ, ଅନେକ ବନ୍ଧୁ । ସମସ୍ତଙ୍କର ପ୍ରତିଛବି ଅଛି ଭଙ୍ଗା ବାକ୍‌ସ ଭିତରେ । ବୋଧହୁଏ କୁସୁମୀର କିଏ ନୂଆବନ୍ଧୁ ଜୁଟିଛି । ଆଗ୍ରହରେ କୁସୁମୀକୁ ନଜାଣିଲା ଭଳି ସଙ୍କେତ ଦେଉଛି । ତା'ର ରୂପ ଯୌବନରେ ଆତ୍ମହରା ହୋଇ ଅଭିସାର ରଚିଛି ।

ବରଙ୍କି କୁସୁମୀ ଉପରେ ଝରକା ହେଲା ବାହା । ଏ ପଲ୍ଲୀ ଭିତରେ ରଖାଇ ଦେବନି କାହାକୁ । ଯଦି ପ୍ରେମ କରିବାକୁ ଏତେ ମନ, ତାହାହେଲେ ଆଉଥରେ ବାହାସାହି ହେବାକୁ କିଏ ମନାକରୁଛି ? ଏ ପୁରୁଷ ଜାତିଟା ବି ସେଇପ୍ରା । ଲୁଚି ଛପି ପ୍ରେମ

କରିବାରେ କଣ ମିଳେ କେଜାଣି ? ନିଜ ପିଲା ମାଇପ ଗୁଡ଼ା ସ୍ୱଦେଶରେ ପଡ଼ିଥିଅ ଉପରେ ଆଖି ବୁଲନ୍ତି । ତାଙ୍କର ଯେ ଯେଉଁ ଗୃହିଣୀ । ସରମ ଲଗେନା ଅଚିହ୍ନା ଲୋକଙ୍କୁ ଯେମିତି ପିଇଗଲା ଭଳି ଚାହିଁଲେ ? ଯେତେ ହେଲେ ପୁରୁଷ ଜାତି ଭଅଁର । ନୂଆଫୁଲ ଉପରେ ତାଙ୍କର ଅନେକ ଶ୍ରଦ୍ଧା । ଫୁଟିଲା ନୂଆଫୁଲଟିଏ ଦେଖିଲେ ଭଅଁର ଯେମିତି ଉଚ୍ଛନ୍ନ ହୁଏ—ନୂଆ ଯୁବତୀ ଆଗରେ ସେମାନେ ଯେମିତି ଉଚ୍ଛନ୍ନ ହୁଅନ୍ତି । କାଳବେଳକୁ ଭୁଲି ଦୁନିଆ ଦୁଆରେ ପଥ ହୁଡନ୍ତି ।

ପଛ ପାଖରେ ଧଡ଼ଧାଡ଼ ଶବ୍ଦ ହେଲା । ବରଙ୍ଗି ଗୁନିଆ ହୋଇ ଘରଭିତରେ ପଶି ଡାଳବେଡ଼ା କାନ୍ଥର ତଳଦ୍ୱାରକୁ ଚାହିଁଲା । ରାଉରକେଲାରେ ଏବେ କେଇଦିନ ହେଲା ଲଗାଏତ ଚୋରିହେଉଛି । ଦିନ ଦି’ପହରେ ସିନ୍ଧିକାଟି ଚୋର କଳାକନା ବୁଲୁଛି । ରାଉରକେଲାର ପୋଲିସ ଅବସ୍ଥାକୁ ଆୟତ୍ତ କରି ପାରୁ ନାହାନ୍ତି । ସରକାର ବିପକ୍ଷରେ ସମାଲୋଚନା ହେଉଛି । ଉଦିତନଗର କଚେରୀକୁ ପାଖ । ସେଇଠି ସରକାରଙ୍କର ମୁଖିଆ ମୁଖିଆ କର୍ମଚାରୀ ରହନ୍ତି । ତଥାପି କିଛି ହେଲେ ନିରାପତ୍ତା ନାହିଁ । ଆଖିଆଗରେ ହଜାର ହଜାର ଟଙ୍କା ଚୋରି ହୋଇ ଯାଉଛି । କାହାକୁ ବା ସନ୍ଦେହ କରିବ ପୋଲିସ ? କ୍ରମବର୍ଦ୍ଧମାନ ରାଉରକେଲା ଗୋଟିଏ ଆନ୍ତର୍ଜାତିକ ନଗରୀରେ ପରିଣତ ହେବାକୁ ବସିଲାଣି । ପୂର୍ବ ଓ ପାଶ୍ଚାତ୍ୟ ଦେଶରେ ଅଦ୍ଭୁତ ମିଶ୍ରଣ ହୋଇଛି ଏଇଠି । ଭାରତର ସବୁ ସ୍ଥାନର ଲୋକେ ଜମିଛନ୍ତି । ଫେରାରୀ ଆସାମୀ ନାଁ ବଦଳାଇ ଭଦ୍ରଭାବରେ ଚଳପ୍ରଚଳ ହେଉଛି । ଦାଗୀ ବୋଲିତ ମୋହର ବସିନି ମୁହଁରେ । ବେଶ ପୋଷାକ ଦେଖି ଲୋକେ ଭୁଲରେ ପଡ଼ି କହୁଛନ୍ତି ଭଦ୍ରଲୋକଟିଏ । ଆଚାର ବ୍ୟବହାର ପ୍ରତି ଦୃଷ୍ଟିଦେବାକୁ ସମୟ କାହିଁ ? ପେଣ୍ଟ କୋଟ

ପିନ୍ଧିଲେ ଗୃହକର ବି ବାବୁର ସଲମ ପାଇଲ । ପୁଣି ବେଶ ପୋଷାକର ତ ମହତ୍ୱରିଗ ନାହିଁ । ଦାମିକା ପୋଷାକ ଧୋବାଘରେ କୁଆଡ଼େ ଭଡ଼ା ଲଗୁଛି । ଆଠଣା ପଇସା ଦେଲେ ଗୋଟାଏ ଦିନ ପାଇଁ ଗୋଟାଏ ସୁଟ୍‌ର ମାଲିକ । ଡେଣିକି ମନ ଇଚ୍ଛା ମଉଜ କର । ପୋଷାକ ଦେଖାଇ ପଉରୁଷ ବାଢ଼ । ସବୁତ ପ୍ରଦର୍ଶନ ।

ବିରଞ୍ଚି ଦେଖିଲା କାନ୍ଥ ଗୃହପଠ ସମାନ ଅଛି । ତଥାପି ସେ ସନ୍ଦେହୀ ଆବାଜ ଆସିଲ କେଉଁଠୁ ? ବାରଣ୍ଡା ଉପରୁ ମୁହଁ ଚଳାଇ ଭିଙ୍ଗାଗୃଳ ସେପଟେ ଅନସା କଲ ବିରଞ୍ଚି । କୁସୁମୀ ସେତେବେଳେ ଅପରିଚିତ ଯୁବକଟି ଆଗରେ ଛିଡ଼ା ହୋଇଛି । ଯୁବକଟି କୁସୁମୀର ବାଁ ହାତ ଧରି ଉଡ଼ୁଛି । କୁସୁମୀ ମୁହଁରେ ଖଲଖଲିଆ ହସ । ଲେଟେଣୀ ଜୁଡ଼ାଟିକି ବେକ ଉପରୁ ଖସାଇ ଆଣି ଗୁଡ ଉପରେ ରଖିଛି । ଲେଟେଣୀ ଜୁଡ଼ାରେ ରେଶମୀ ଫିତାର ଦୋଳନ । ବେକ ଉପରେ ଗେଠାପାଗୁ ପ୍ରଜାପତି । ପ୍ରଜାପତି ଉପରେ ଦର୍ପଣଦିଆ ନାଇଲନ୍ ଫୁଲ । କୁସୁମ ଚମତ୍କାର ଦେଖା ଯାଉଛି । ଏ ବେଶ ବାସରେ ଦେଖି କିଏ କହିବ ସେ ଓଡ଼ିଆ ଝିଅଟିଏ ? କିଛିଦିନ ତଳେ ସଫା ଶାଢ଼ୀଟିଏ ଦେଖିବାକୁ ମିଳୁ ନଥିଲା ତାକୁ ? ଏ ଯୋଡ଼ା, ଏ ଫିତା ଭଳି କୁସୁମୀ ବିରଞ୍ଚି ଆଗରେ ନୂଆ ଦେଖା-ଗଲା । ସହର ମାଡ଼ିଲେ ମଣିଷ ପୁଣି ଏମିତି ବଦଳି ଯାଏ ?

ଦୁଲଶୀ କୁସୁମୀ ପରି ବେଶ ହୁଏ । କୁସୁମୀଠାରୁ ଆହୁରି ଚମତ୍କାର ମାନେ ତାକୁ ଫୁଲପକା ଘାଗର ଆଉ ପେଟଅଧା ବ୍ଲାଉଜ । ଦୁଲଶୀ ନୂଆ ଛବିଟିଏ ଭଳି ଦେଖାଯାଏ । ତାହାହେଲେ କୁସୁମୀ ଭଳି ସିଏ କଣ ମାନମର୍ଯ୍ୟାଦା ବିକୁଛି ? ବିରଞ୍ଚିର ଗୁଡ ଧଡ ଧଡ଼ ହୁଏ । ଗୁରୁଆ ଯେତେବେଳେ ଫେରି ଦେଖିବ ସଂସାର ତାର ବଦଳି ଯାଇଛି—କଣ ଭାବିବ ତାକୁ ? ଗୁରୁଆର ଅବିଶ୍ୱାସକୁ କଣ ସେ ସହ୍ୟ କରି ପାରିବ ?]

ବରଗିଙ୍କ ଇଂସାବାସନ ମାଜି ସାଟିଥିଲା । ଏବେ ଦୁଆବଧାଇ ଜଣ ଘର ଭିତରକୁ ବୋହିନେଲା । ମୁଣ୍ଡ ଦିନକୁ ଦିନ ଓଜନିଆ ଲାଗୁଛି । ଅଲଗବାଳ ଗଣ୍ଡାକ ଅଜଗରର ବୋଝ ହେଲାଣି ! ତାହାର ଭିତରୁ କେମିତି ଗୋଟାଏ ଅସନା ଗନ୍ଧ ବାହାରିଲାଣି । ଗୁଲବା କେତେ ଜଣ କହୁଥିଲା କୁଣ୍ଡାଇ ଦେବାକୁ—ନେହୁରା ହୋଇ କହୁଛି ସେ ଫେରିଲା ବେଳକୁ ଯେମିତି ମୁଣ୍ଡ ବାନ୍ଧ ସାରିଥାଏ । ବରଗିଙ୍କ ତେଲ ଗିନାଏ ଧରି ତାଙ୍କ ଉପରେ ଢାଳିଲା । ମଲଚିଆ ଆରସୀ କାଢ଼ି ପାନିଆଟିକୁ ଦାʼଗୁରିଥର ମୁଣ୍ଡ ଉପରେ ବୁଲାଇଛି କି ନାହିଁ ପାନିଆର ଗୋଟିକ ପରେ ଗୋଟିଏ ଦାନ୍ତ କଡ଼ମଡ଼ ହୋଇ ଭାଙ୍ଗିବାକୁ ଲାଗିଲା । ଦୁଲାରି କେଉଁଠୁ ଏସବୁ ରଙ୍ଗିଲା ପାନିଆ ଆଣିଛି କେଜାଣି—ଦେଖିବାକୁ ସୁନ୍ଦର ସିନା, କୌଣସି କାମରେ ଲାଗୁନାହିଁ । କାହିଁକି ଏସବୁ ଦୁର୍ବଳ ଜିନିଷ ଆଣେ ଦୁଲାରୀ ? ଗୁଲବାର କାଠପାନିଆର ଦାନ୍ତ ଅଛି । ମଜଭୁତ ଦାନ୍ତ ଲାଗି ସବୁ ଅଲଗ ଇଟ ପିଟିଗଲା । ମୁଣ୍ଡ ଭଲ ଲାଗିଲା । ବରଗିଙ୍କ ଉଠିପଡ଼ି ଦେହରୁ ମୁହଁରୁ ଚୂନାକେଶ କେଇଟିକୁ ଝାଡ଼ିବାକୁ ବସିଲା । ଗ୍ରୀବା ଉପରୁ ଲୁଗା ଖସାଇ ପଣତ ଦେହରେ ବାଖିହେଲା । କାଖତଳୁ ଝାଳ ବହୁଛି । କପାଳରେ ମଧ୍ୟ ବିନ୍ଦୁ ବିନ୍ଦୁ ଝାଳ । ଗଉରୀକେଲରେ ଏବେ ଗରମ ବଢ଼ୁଛି । ଏ ମିଲଗୁଡ଼ିକ ବସି ତାତକୁ ଧୂଆଁରେ ପବନ ରୁନ୍ଧ ଦେଲାଣି । ବରଗିଙ୍କ ଦେହ ଝାଡ଼ୁ ଝାଡ଼ୁ ତା ମାଙ୍ଗିସିଆ ଗ୍ରୀବା ଉପରେ ନିଜ ଅଜାଣତରେ ଆଖି ବୁଲାଇ ନେଲା । ମାଙ୍ଗିସର ନିଦା ଗଦାଟିଏ । ଗୁରୁଆର ରଙ୍ଗରହସ୍ୟ ତାʼ କାନ ଭିତରେ ଅଜାଡ଼ି ହେଲା । ମନ ଭିତରେ ସରମି ଯାଇ ସେ ପିନ୍ଧାଶାଢ଼ୀଟିକୁ ବେକ ଉପରକୁ ଟେକି ନେଉଛି, ଦେଖିଲା ଜାନମ ଓସ୍ତାଂ କଟମଟ କରି ତାର ଦେହକୁ ମୁହଁକୁ ଗୁହୁଁଛି ।

ଜାନମ୍ ବେଳେ ବେଳେ ବଉଗିଙ୍କ ଘରକୁ ଆସେ । ଗୁଲବୀ କି ଦୁଲସୀ ଥିଲେ ଠିଆ ଠିଆ ଦୁ'ପଦ କଥା ହୋଇ ଫେରିଯାଏ । ବଉଗିଙ୍କୁ ଏକୁଟିଆ ଦେଖି ଦୁ'ପଦ କଅଁଳ କଥା କହିବାକୁ ତାର ଇଚ୍ଛା । ଗୃହୁଆକୁ ଯେତେବେଳେ ସଙ୍ଗାହେଲ, ସିଏ କେତେ ସାନ୍ତ୍ୱନା ଦେଉଥିଲା । ଗାଇଙ୍ଗଙ୍କର ଦରଦ ଭରି ଆତ୍ମୀୟ ଭଳି ଅନେକ ସାହାଯ୍ୟ କଲା ପରିବାରଟିକୁ । ସାମୁଏଲ ସାହୁଙ୍କୁ ଯାଇ ଗୁହାରି ଜଣାଇଲା । ସାମୁଏଲ ଦେବତା ସମାନ ଲୋକ, ଝିଅପୋଡ଼ଙ୍କୁ ଫାଦ୍ରୀ ଇସ୍କୁଲରେ ରଖି ତାଙ୍କୁ ଟାଇପିରେ ଲଗାଇ ଦେଲେ । ଗୁଲବୀ ସିନା ପଢ଼ିଲା ନାହିଁ, ଦୁଲସୀ ଅନେକ ପାଠପଢ଼ି ଜର୍ମାନ ଘରେ କାମକଲା । କେତେ ବୁଦ୍ଧି, କେତେ ଫିକର ଶିଖିଛି ଦୁଲସୀ ।

ସାମାନ୍ୟ ସହାନୁଭୂତି ପରେ ଜାନମ୍ ସଙ୍ଗେ ବଉଗି ଓ ଗୃହୁଆର ଦୁ'ଝିଅଙ୍କର ଘନିଷ୍ଠତା ବଢ଼ିବାକୁ ଲଗିଲା । ଗୃହୁଆ କଥା ଭୁଲି ଯିବାକୁ ଜାନମ ଅନେକ କଥା କହିଲା । ସେ କହେ, ଜୀବନ କେତେ ଦିନକୁ ଲୋ ବଉଗି ! ଆଜିର ପ୍ରାଣ କାଲିକି ନାହିଁ । ଜୀବନ ଥିଲାଯାଏ ଜୀଇଁବାର ସ୍ୱାଦ ଚାଖିନେ । ଆମ କୁଳରେ ତ ଚଳୁଛି । ତୁ ମଙ୍ଗିଲେ ବାକି ଚଳା । ମୁଁ ବୁଝିବି । ଗୃହୁଆ ମୋର ସାଙ୍ଗଥିଲା । କହିବୁ ଯଦି ତାର ଦୁ'ଝିଅଙ୍କୁ ସମ୍ଭାଳି ନେବି ।

ଜାନମ ଏବେ ଡ୍ରାଇଭର ହେଇଛି । ଅନେକ ଧନ ରୋଜ-ଗାର କରୁଛି । କିନ୍ତୁ ବାହାଟୁରି ନ ହୋଇ ବଉଗି ଉପରେ ଆଖି ବୁଲାଉଛି । ଦିଲଦିନର ଲୋଭ ଆହୁରି ଯାଇନାହିଁ ।

ବଉଗି ଜାନମ ମୁଣ୍ଡାକୁ ଦେଖି ଗୁନିଆ ହେଲା । ତାର ସେହି କଷରା କଷରା ଆଖି ଦେଖି ଅନେକ ପ୍ରକାରର ପ୍ରମାଦ ଗଣିଲା ।

ବଉଗି ! ମୋ କଥା କଣ ବୁଝିଲୁ ?

କି କଥାରେ ଜାନମ ? ମୋର କଥାତ ମୋତେ ବଳାଉଛି, ତୋ କଥା ବୁଝିବାକୁ ବେଳ କାହିଁ ? ବଉଳ ଉତ୍ତର ଦେଲା ।

ବେଳ କରିବାକୁ ହେବନା ? ମନଭୁଲାଇ ଆଉ କେତେଦିନ ରହିବୁ ?

କାହିଁକି ? ଗୃହୁଆ ପାଇଁ ଜୀବନସାରା ରହିବାକୁ ଯାହେଁ ଅଛି । ତାର ପିଲା କଣ ମୋର ନୁହନ୍ତି ? ଏ ବଢ଼ିଲା ଝିଅଙ୍କୁ ଗୁଡ଼ ଆଉକଣ ବୁଝିବ ?

ବଢ଼ିଲା ଝିଅଙ୍କୁ ଗୁଡ଼ ଦେବାକୁ ତ କହୁନାହିଁ—କହୁଛି ତୋର କଥାଟିକେ ଚିନ୍ତାକର, ଆମ କୁଳରେ କଣ ନାହିଁ ଯେ—

ବଉଳ ଆଖିରେ ଲୁହ ଗଡ଼ାଇ କହିଲା, ଜାନମ୍‌ରେ ! ତୁ ଯଦି ମୋର ଏହି ଦୁରବସ୍ଥା ଦେଖି ସୁଯୋଗ ନେବାକୁ ବସିଥାଉ, ତେବେ ଶୁଣିଯା—ଏ ଦେହ, ଏ ମନ ଗୃହୁଆର । ତାକୁ ଗୃହୁଆ ପାଖରୁ ଛଡ଼ାଇ ନେବାକୁ ଆୟତ୍ତ ନାହିଁ କାହାର ।

କିନ୍ତୁ କୁସୁମୀ ?

କଥା ଛଡ଼ାଇ ବଉଳ କହିଲା, କୁସୁମୀ ପାଖକୁ ଯାଉନୁ ! ତୋ ପାଇଁ ତା ଦୁଆରକୁ ଯାଇ ପକ୍‌କା କରିଦେଇ ଆସିବି ।

କୁସୁମୀ ? ଜାନମ୍ ଓଠଂ ଉପହାସର ହସ ହସି କହିଲା, କୁସୁମୀ ଆଉ କଣ ଓଠଂ ମାଇପୀ ହୋଇ ଅଛି ? ତା ମୁଣ୍ଡରେ ଗଉରକେଲର ପଇସା ପୋକ ପଶିଲାଣି । ତାକୁ ସାହିଜୀର ସଂସାର କରିବା କଣ ସହଜ ? ତୁ ଯଦି ରାଜି ହେଉ—

ତୋ ଗୋଡ଼ତଳେ ପଡ଼ୁଛି ଜାନମ, ଭାଉଜାଇ ହିସାବରେ ମୋତେ ରକ୍ଷା କର !

କିନ୍ତୁ ତୋ କଥା ତୁ କେବେ ଭାବିଛୁ କହିଲୁ ? ତୋ ଦେହ ସୁଣ୍ଡର ଖବର ନେଉଛୁ ତ ? ତୁ କଣଥିଲୁ, କଣ ହେଲୁଣି । ବରଷ

ଗୃହଟା ଭିତରେ କେତେ ବଦଳି ଗଲୁଣି—ବର୍ଗିର ଭୂତ ହୋଇ ଯାଉଛୁ ।

ବରଗିର ଭୂତକୁ ତୋର ଏତେ ଶରଧା କାହିଁକି ଜାନମ୍ ?

ଖାଲି ବର୍ଗି ପାଇଁ ! ତୁ ସିନା ମୋ କଥା ଭୁଲି ଯାଉଛୁ—କିନ୍ତୁ ତୋ କଥା ମୁଁ କେତେ ଭାବେ ଜାଣିଛୁ ? ରାତିରେ ପରା ନିଦ ହୁଏନି ! ସେଇଥି ପାଇଁ ମଦ ଅଭ୍ୟାସ ବଢ଼ାଇ ଦେଇଛି । ଦିନ ସାରା ଗାଡ଼ି ଚଳାଇ ଘରକୁ ଆସିଲେ ଦେଖେଁ ସବୁ ଶୂନ୍ଶାନ୍ । ତୋର ସରସ ମୁହଁ ଖଣ୍ଡିକ ଆଖି ଆଗରେ ଝଲସି ଉଠେ । ସେଇଥି ପାଇଁ ତୋର ପାଖକୁ ଧାଏଁ । କିନ୍ତୁ ସବୁଦିନ ତୁ ଫେରାଇ ଦେଉ । ଅସହ୍ୟ କଷ୍ଟ ନେଇ ମୁଁ ଫେରିଯାଏ—ମଦନ ମନେ ରାଗେଁ କି ଅନେକ କିନ୍ତୁ ପୁଣି ତୋତେ ଦେଖିଲେ ସେ ରାଗ ଭୁଲିଯାଏ ।

ମୋତେ ବି ସେମିତି ଭୁଲିଯା ଜାନମ୍ । ମନେ ଭାବ ମୁଁ ତୋର ଶୋଇଲା ନିଦର ସପନଟିଏ—କିନ୍ତୁ—

କିନ୍ତୁ କଣ ?

ତୁ ମୋତେ ତାହାହେଲେ ଖୁବ୍ ଭଲ ପାଉନା ଜାନମ !

ହଁରେ ବରଗି ! ଜୀବନଠାରୁ ଅଧିକ । ତାହାହେଲେ ଦେଖିବୁ ମୁଁ କେମିତି ତୋତେ ରାଣୀଭଳି ରଖିବି । ଭଲ ଭଲ ଶାଢ଼ୀ ଆଣିଦେବି ! ସୁନ୍ଦର ଖାଇବା, ପିଇବା ଆଉ ମଜଲିସ କରିବା । ରାଜରଜେଲର ଆଉ ପାଁ ଜଣଙ୍କ ଭଳି ଆନନ୍ଦରେ କାଳ କାଟିବା । ତୁ ହସୁଥିବୁ ଆଉ ସେ ହସକୁ ଦେଖି ମୁଁ ସୁଖୀହେବି !

ମୋର ହସ ତାହାହେଲେ ତୋତେ ବହୁତ ଆନନ୍ଦ ଦେବ—ନୁହେଁ ?

ଜାନମ୍ ମୁଣ୍ଡ ଟେକି ଚାହିଁଲା !

ଦେହଧରି କହିଲୁ, ତୁ ମୋର ଆନନ୍ଦ ଗୃହ ।

ଜାନମ୍ ଅତି ଆଗ୍ରହରେ ବରଙ୍ଗିର ହାତ ଉପରେ ହାତ ଦେଲା । ଜାନମ୍‌ର ହାତ ବରଙ୍ଗିର ହାତ ଉପରେ ଥରି ଉଠୁଥିଲା । ଅନେକ ଦିନପରେ ନିଜ ଇଚ୍ଛାରେ ବରଙ୍ଗି ତାର ହାତ ଉପରେ ହାତ ରଖିବାକୁ କହୁଛି । ଏହି ସୁନ୍ଦର ମୁହୂର୍ତ୍ତକୁ ଆନେକ ଦିନ ଧରି ସେ ଅପେକ୍ଷା କରିଥିଲା—ଏହି ସୁବର୍ଣ୍ଣ ସୁଯୋଗ ପାଇ ତାର ହୃଦୟ ଆନନ୍ଦରେ କୁରୁଳି ଉଠୁଥିଲା ।

ମୁଁ ଯାହା କହିବ କରିବୁତ ଜାନମ୍ ? ବରଙ୍ଗି ପଚାରିଲା ।

ଜାନମ୍ ରାଜିହେଲା । କହିଲା ଏ ହାତର ଶପଥ ନେଇ କଥା ଦେଉଛି । ପ୍ରାଣ ଦେଇ ତୋର କଥା ରଖିବି ।

ତୁ ସାଧୁ କରରେ ଜାନମ୍ !

ସେହି କଥା ତ କହୁଥିଲି । ଯାହାହେଉ ଭଲହେଲା । ଅନେକ ଦିନ ପରେ ତୁ ସେକଥା କହିଲୁ ।

ବରଙ୍ଗି ହସିଲା । କହିଲା ମୁଁ ତ ତୋତେ ସାଧୁକରି ପାରିବି ନାହିଁ ଜାନମ୍—କହୁଚି ଦେଖ ଭଲ ଓରାଙ୍ଗ ଝିଅଟିଏ ଠିକଣା କରିଦେବି ।

ଜାନମ୍ ରାଗିଯାଇ ବରଙ୍ଗିର ହାତଉପରୁ ନିଜ ହାତକୁ ଖସାଇ ଆଣି ରାଗ ଜରଜର ହୋଇ ଲେଉଟି ଗଲା ।

ବରଙ୍ଗି ଜାନମ୍‌ର ଲେଉଟା ବାଟକୁ ଅନାଇ ରହିଥାଏ—ମନଭିତରେ ବେଚ୍ଛନ୍ଦ ଭାବନା ବାଉଳା ଖାଉଥାଏ । କାହାକୁ ଏବେ ସନ୍ତୋଷ କରି ପାରୁଛି ସେ ? ଏକାନ୍ତ ଜୀବନର ସୁଯୋଗ ନେଇ ଅନେକ ଲୋକ ଅନେକ ଆଶାନେଇ ଦୁଆର ମୁହଁକୁ ଆସୁଛନ୍ତି । ଆସିଲାବେଳେ ମୁହଁରେ ଅକଳନ ହସ, ଅନେକ ଆବେଗ । ମନ କଲେ ରାଗ ଜରଗର ହୋଇ ବାହୁଡ଼ି ଯାଉଛନ୍ତି । ସେ ଦିନ ଯେମିତି ପଞ୍ଜାବୀ ଡ୍ରାଇଭରଟି ଭଙ୍ଗାଭଙ୍ଗା ଓଡ଼ିଆ କହି ଭଲମନ୍ଦ ବୁଝିବାକୁ ଆସିଥିଲା । କଥା ନହଯରେ ଆଖି ସଙ୍ଗେ

ଆଖି ମିଳାଇଲା । ପଇସା ଯାଚିଲା—ନେଲେ ବରଂ । ପଇସାକୁ କଉଡ଼ା କରନ୍ତା । ପାଖରେ ଥିଲେ ଅନେକ କାମରେ ଆସିବ । ଦେହମୁଣ୍ଡର ହେପାଜତ କର । ମଇଳା ଦେହର ବଅସରଙ୍ଗ ଫେରିଆସିବ । ଦେହକୁ ଦି'ଖଣ୍ଡ ମିଲ ଶାଢ଼ୀ କର । ତାର ସାମାନ୍ୟ ଉତ୍ତର ପଦକରେ ସବୁ ସରଗ, ଦରଜ ଉଭେଇ ଗଲା । କହିଗଲା, ଅଜଣା ଲୋକଟିଏ ସହାନୁଭୂତି ଦେଖାଇବାକୁ ଆସିଲେ ତାକୁ ଏମିତି କଡ଼ାକଡ଼ା ଶୁଣାଇ ଫେରାଇ ଦେବା ଭଲ ନୁହେଁ । ବରଂ । ପଛକୁ ପସ୍ତାଇବୁ ।

ବେଳେ ବେଳେ ଝଟକା ଦେହରେ ଜୁଆର ଛୁଟେ । ଅଙ୍ଗ ପ୍ରତ୍ୟଙ୍ଗ ଅହେତୁକ ଭାବରେ ପୁଲକିତ ହୁଏ । ମନ-ମୟୂର ପୁଚ୍ଛଟେକି ନାଚେ । ଯୁବତୀ ମନ ତାର ଗୁମୁରି ଉଠେ । ରାଉରକେଲାର ଆଲୋକିତ ବଳୟକୁ ନିଠେଇ ନିଠେଇ ଚାହେଁ— କିନ୍ତୁ ପରକ୍ଷଣରେ ଗୁହୁଆ ତାର ମନେ ପଡ଼େ । ବିବାହିତ ଝିଅ ପରପୁଅ ସଙ୍ଗେ ସମ୍ପର୍କ ରଖିବା କଣ ଭଲ କଥା ? ବରଂ ତାର ମନର ଏହି ଜୁଆରିଆ ଆବେଗ ସଙ୍ଗରେ ତାଳ ଦେଇ ପାରେ ନାହିଁ । ସେ ସମସ୍ତ ଅଭିଳାଷର ଅଲରା ଝିଅକୁ ଏକାନ୍ତ କରି ଗୁଢ ଚଞ୍ଚିର ତଳେ ଚୁପିରଖେ······

'ଗିଲାସେ ପାଣିଦେଲୁ ବୁଲ୍‌ବୁଲ୍ ।' ଯୁବକ ଜର୍ମାନ ମିଃ ଲଏଡ଼ ଆଦେଶ ଦେଲେ ।

ଦୁଲସୀ ମନେ ମନେ ବହେ ହସିଲା । ପାଣିଗ୍ଲାସ ଆଣି ଟେବୁଲ ଉପରେ ରଖିଦେଲା । ଡେଲିଶଦ ଦୁଇଟି ଅସଫାହୋଇ

ସେମିତି ପଡ଼ିରହିଛି । ପାଇନ୍ କାଠର ଆରାମ୍ ଚେୟାରରେ ରଙ୍ଗଦେବାକୁ ହେବ । ଫୁଲଦାନିର ଟେବୁଲ ଗୋଲାପ ତୋଡ଼ାକ ଝାଉଁଳି ଗଲାଣି । ତାକୁ ବଦଳାଇ ନଦେଲେ ନଚଳେ । ନହେଲେ ବୁଢ଼ୀ ଗରଗର ହେବ । ଆଚ୍ଛା ଏ ଲଏଡ୍‌କୁ ଅଚେତନାବସ୍ଥାରେ ଶୋଷକଲା କେମିତି ? ଏବେ ଠିକ ଆଗରୁ ପାଟି ସଳଲା । ଗୁଡ଼ାଏ ବ୍ରାଣ୍ଡି ପିଇଥିଲା । ଏବେ ପୁଣି ପାଣି ମାଗୁଛି ।

ପାଣିଗ୍ଲାସ ଦେଖି ଲଏଡ୍ କହିଲା 'ଧନ୍ୟବାଦ ।' ତା'ପରେ ଦୁଲାରୀର ସଜଫୁଲ ଭଳି ସରସ ମୁହଁକୁ ଅନାଇଲା । ଓଠ ଦୁଇଟି ଥର ଥର ଉଠୁଛି । ସେ ହସୁଛି ବୋଧହୁଏ । କଳା ରଙ୍ଗବୋଳା ଭୁରୁ ଉପରର କୁଞ୍ଚିତ ରେଖା କେଇଟି ଚମତ୍କାର ଦେଖା ଯାଉଛି ।

ଦୁଲାରୀ ଲଏଡ୍ ମୁହଁକୁ ଚାହିଁ ଅପାଙ୍ଗ ହାଣିଲା—
ତୁମେ ହସିଲ କାହିଁକି ବୁଲ୍‌ବୁଲ୍ ?
ମୁଁ ବୁଲ୍‌ବୁଲ ନୁହେ ଲଏଡ୍—ମୁଁ ଦୁଲାରୀ !

ଆରେ ତମେ ତାହାହେଲେ ଦୁଲାରୀ ! ମୋତେ କ୍ଷମାଦେବ ଦୁଲାରୀ ! ଭାରତୀୟ ନାଁ ଗୁଡ଼ିକ ମନେ ରହୁନି ଜମାରୁ । ଅନେକ ଭୁଲକରି ବସିଛି । ଆଚ୍ଛା ତୁମକୁ ଯଦି ବୁଲବୁଲ୍ ଡାକେ—

ବୁଲ୍‌ବୁଲ୍ ! ମୁଁ ?

ହଁ ତମେ ଠିକ୍ ବୁଲ୍‌ବୁଲ୍ ଭଳି । ସେକ୍‌ସପିଅର୍‌ଙ୍କ ନାଇଟିଙ୍ଗେଲ୍‌ସ୍ । ଭାରତର ଏହି ସୁନ୍ଦର ଫୁଲ ଉଦ୍ୟାନରେ ସ୍ୱାଧୀନମନା ପକ୍ଷୀଟିଏ । ତୁମ ଦେହରେ ରଙ୍ଗ ଚମତ୍କାର— କଣ୍ଠ କୋମଳ । ତୁମକୁ ବୁଲ୍‌ବୁଲ୍ ଡାକିଲେ ରାଗ କରିବ ନାହିଁତ ?

ରାଗ କହିବାକୁ ଚାହେଁ ଲଏଡ୍ ? ଦୁଲାରୀ ଦେଖିଲା ଜର୍ମାନ ଯୁବକର ମୁହଁ ଖଣ୍ଡିକ ପାଚିଲା ଆମ୍ବଭଳି ଲାଲ ଗରଗର ହୋଇ

ଗଲଣି । କହରଆ ଆଖିଯୋଡ଼ାକ ଛନ ଛନ ହେଉଛି । ଲଏଡ୍ ଗୁଡ଼ାଏ ମଦଖାଇ ଦୁର୍ବଳ ହୋଇ ପଡ଼ୁଛି ।

ଦୁଲାରୀ ! ତମେ କଥା କହୁନା ଯେ···ପାଖକୁ ଆସ ।

ଦୁଲାରୀ ସଙ୍କୋଚ ପାଦରେ ପାଖକୁ ଘୁଞ୍ଚି ଆସି କହିଲା, କି କଥା ଶୁଣିବ ଲଏଡ୍ !

ଯାହା କହିବ ଶୁଣିବ ! ସବୁକଥା ଶୁଣିଯିବ । ତୁମ ଦେଶକୁ ଆସି ଏଇ ଅଳ୍ପଦିନ ମଧ୍ୟରେ ଏଇଦେଶ ପ୍ରତି ମୋର ଗୋଟାଏ ଅଦେଖା ଆକର୍ଷଣ ଜନ୍ମିଗଲଣି । କି ସୁନ୍ଦର ଏ ଦେଶ ! ଏ ଦେଶରେ କରଣ ମନ ଭିତରେ ସପନ ବୁଣେ—ଏ ଦେଶର ପାଣି ପବନ ଅଙ୍ଗେ ଅଙ୍ଗେ ଶୀହରଣ ଢ଼ାଳେ—ଆଉ ଜର୍ମାନ ଦେଶ । ଯେଉଁଠି ବରଫ ଭିଜା ହେମାଳ ପବନ । ଟିକିଏ ବି ଉଷ୍ମତା ନାହିଁ—ସୂର୍ଯ୍ୟକିରଣ ସ୍ୱପ୍ନ ଭଳି ଆନନ୍ଦ ଦିଏ । କାରଣ ତାହା କ୍ଷଣସ୍ଥାୟୀ ।

ରାଉରକେଲା ତୁମକୁ ଭଲଲାଗେ ଲଏଡ୍ ?

ଭଲ ଲାଗିବ ନାହିଁ ରାଉରକେଲା ? ଆମଦଳର ସମସ୍ତେ ଖୁସି ଅଛୁଁ । ରାଉରକେଲାର ଅଦିନିଆ ଝୁଣୁଝୁଣୁ ବର୍ଷା ଅଶେଷ ଆନନ୍ଦ ଦେଉଛି । ଏଇ ସୂନା ଶାଢ଼ୀ ପିନ୍ଧା ଗହଳ ଫସଲ, ଘାସବୁଣା ଝିଲମିଲ ଖରା ଆଉ ସରଳ ସୁନ୍ଦର ନରନାରୀଙ୍କ ମନ ପ୍ରକୃତରେ ପ୍ରଣିଧାନଯୋଗ୍ୟ । ଆଚ୍ଛା ଦୁଲାରୀ ! ଏ ଦେଶର ତରୁଣୀ କ ଆଜ୍ଞେ ବିବାହ ବେଳେ କାନ୍ଦେ ?

କାହିଁକି ? ତମ ଦେଶରେ କଣ ବାହାହେଲା ଝିଅ କାନ୍ଦେ ନାହିଁ ? ଲଏଡ୍‌ର ଖାପ୍‌ଛଡ଼ା ପ୍ରଶ୍ନବାଚୀରେ ଦୁଲାରୀ ଚମକି ପଡ଼ିଥିଲା ।

ନାଁ ।

ତେବେ ?

ସେ ଖାଲି ହସୁଥାଏ ଦୁଲାରୀ । ବିବାହ ଭଳି ଏତେବଡ଼ ସୁନ୍ଦର ପର୍ବରେ ସେ କାନ୍ଦିବ କାହିଁକି ?

ସେ ହସି ହସି ସମସ୍ତଙ୍କର ଶୁଭେଚ୍ଛା ଗ୍ରହଣ କରେ ଜୀବନକୁ ଉପଭୋଗ କରିବାକୁ ସମସ୍ତଙ୍କ ସାମନାରେ ନାଚେ ଆଉ ଗାଏ······କାନ୍ଦିବାର ତ ପ୍ରଶ୍ନ ନାହିଁ ସେଠାରେ ।

କିନ୍ତୁ ଏଠାରେ ଝିଅ ବାହା ହେଲାବେଳେ ଅନେକ କାନ୍ଦେ । ସାଙ୍ଗ ସାଥି ଓ ବାପ, ମାଆଙ୍କୁ ଚିରଦିନ ପାଇଁ ଛାଡ଼ି ଚାଲିଯାଉଥିବାରୁ ତା ଆଖିରେ ଲୁହ ଜମେ । ପରିଚିତ ଗାଁ ମାଟିର ସ୍ନେହ ଶ୍ରଦ୍ଧାକୁ ଆଖିର ଲୁହ ଝରିଆରେ ସମ୍ମାନ ଦିଏ ।

ସେ କଣ ଶାଶୁଘରକୁ ଯାଇ ଆଉ ଫେରେ ନାହିଁ ତୁଳସୀ ?

ନାଁ । ହିନ୍ଦୁ ଝିଅ ଥରେ ବାହାହେଲେ ଜନମ ଯାକ ସେ ପରର ହୋଇ ଯାଏ । ନିଜ ଘରର ସମସ୍ତ ମାୟା ଭୁଲିଯିବାକୁ ବାଧ୍ୟ ହୁଏ ସେ । ବିବାହ ପରେ ପତି ହିଁ ହୁଏ ତାର ଦେବତା, ତାର ଇହ ଜୀବନର ଏକମାତ୍ର ଅବଲମ୍ବନ । ଶାଶୁଘର ତାର ତୀର୍ଥମାଟି, କର୍ମଭୂମି । ଜନମ ହୋଇ ବଢ଼େ ଗୋଟିଏ ଘରେ—କିନ୍ତୁ ବଡ଼ ହୋଇ ସଂସାର ଚଳାଏ ଆଉ ଗୋଟିଏ ଘରେ ।

ଏ ଗୋଟିଏ ବନ୍ଧନ ତ ତୁଳସୀ !

କିନ୍ତୁ ଏ ବନ୍ଧନ ଅତ୍ୟନ୍ତ ମଧୁର, ଅତ୍ୟନ୍ତ ପବିତ୍ର । ସମସ୍ତ ହିନ୍ଦୁ ନାରୀ ଏ ବନ୍ଧନକୁ ଆନନ୍ଦ ମନରେ ଗ୍ରହଣ କରନ୍ତି । ନିଜର ସଂକୀର୍ଣ୍ଣ ସ୍ୱାର୍ଥ ପରିବାର ଆଗରେ ବଳିପଡ଼େ । ହିନ୍ଦୁ ନାରୀ ନିଜ ହାତରେ ନିଜେ ଏହି ପାରିବାରିକ ବନ୍ଧନକୁ ସୁଦୃଢ଼ କରେ—ଆଉ ଏଇଥିପାଇଁ ଗର୍ବ କରେ ।

କିନ୍ତୁ ଆମ ଦେଶରେ ବିବାହ ଉପରେ ଅଯଥା ଏତେ ଗୁଡ଼ିଏ ଗୁରୁତ୍ୱ ଦିଆଯାଏ ନାହିଁ—ତୁଳସୀ ! ପୁଅ ଝିଅ ହସ ଖୁସିରେ ପରସ୍ପରର ସାନିଧ୍ୟକୁ ଏକାନ୍ତ ଭାବରେ ଉପଭୋଗ କରନ୍ତି । ଇଚ୍ଛାହେଲେ ବିବାହ କରନ୍ତି—ଇଚ୍ଛା ନହେଲେ ଛୁଟିରଇ

ଯାଆନ୍ତି । ଝିଅଙ୍କର ମଧ୍ୟ ମନ ନ ମାନିଲେ ଗୃହତ୍ୟାଗର ବ୍ୟବସ୍ଥା ଅଛି—ଅତି ସ୍ୱାଧୀନ ଆଉ ସରସ ଜୀବନ !

କିନ୍ତୁ ଅତି ହାଲୁକା । ନୁହେ ଲଏଡ୍ ?

ଫୁଲଭଳି ହାଲୁକା । ସେଇଠି କଣ୍ଟକର ବଦ୍ଧଗନ୍ଧ ସ୍ପର୍ଶ ନାହିଁ କି ଭାରତୀୟ ଦର୍ଶନର ଗରିଷ୍ଠ ଭାବଧାରା ନାହିଁ—ଜୀବନ ଯେମିତି ଅଛି ସେମିତି ବହିଯାଏ । ବାଧାନାହିଁ କି ବନ୍ଧନ ନାହିଁ । କିନ୍ତୁ ଏଇଠି ଦେଖୁଛି ସବୁ ଓଲଟା । ଓଡ଼ିଆ ଝିଅ ବିବାହିତ ସ୍ୱାମୀ ବ୍ୟତୀତ ଆଉ କାହାରି ସଙ୍ଗରେ ମିଶେ ନାହିଁ । ଏ.ଧି ଭ୍ରମଣକଲବେଳେ ମୁଣ୍ଡପୋତି ମୁହଁରେ ହାତେ ଓଢଣା ଦେଇ ଗଲେ—ଏସବୁ କି ରୀତି ? ଦୁଲାରୀ !

ସ୍ତ୍ରୀ ଜାତିର ସ୍ୱଭାବ ସୁଲଭ ଲଜ୍ଜା ତାକୁ ବିନମ୍ର ହେବାକୁ ଶିକ୍ଷା ଦେଇଛି ମିଷ୍ଟର ଲଏଡ୍ । ଉଚ୍ଚିତ ସ୍ୱଭାବ ସାଧାରଣତଃ ପୁରୁଷର ! ସ୍ତ୍ରୀ ସହିବାକୁ ଭଲପାଏ । ଦୁଲାରୀ ଉତ୍ତର ଦେଲା ।

ଆଉ ସେ ଓଢ଼ଣା ?

କି ଉତ୍ତର ଦେବ ଦୁଲାରୀ ? କହିଲା ସଭିଏଁ ତ ଓଢ଼ଣା ଦିଅନ୍ତି ନାହିଁ । ରକ୍ଷଣଶୀଳ ହିନ୍ଦୁ ପରିବାରରୁ କେତେକ ଓଢ଼ଣା ଦିଅନ୍ତି ମାତ୍ର । ଆମ ଓଡ଼ିଆ ସାହିର ତ ସମସ୍ତେ ମୁକୁଳା— ସେମାନଙ୍କର ଓଢ଼ଣା ନାହିଁ । ସ୍ୱାଧୀନ ଭାବରେ ମିଳାମିଶା କରନ୍ତି ।

ଆଉ ତମେ ଯେ ଏମିତି .ଖାପଛଡ଼ା ହୋଇଯାଅ ଦୁଲାରୀ ! ତମକୁ ଦେଖିଲେ ମ-ନହୁଏ ସାରା ଭାରତର ସମସ୍ତ ଲଜ୍ଜାସରମ ତମଠି ଠୁଳ ହୋଇଛି । କେବେ ତ ହସି ହସି ଉତ୍ତର ଦିଅନାହିଁ । ଜର୍ମାନ୍ ଦେଶରେ ଏତେଦିନ ଧରି ଯଦି ଯୁବତୀଟିଏ ଯୁବକ ପାଖରେ ତୁମଭଳି ଏକାନ୍ତ ମିଳାମିଶା କରେ, ସେ କ୍ରମେ ପ୍ରଗଲ୍‌ଭ ହୋଇ ଉଠେ । କିନ୍ତୁ ତୁମକୁ ଦେଖୁଛି ତୁମେ ଦିନକୁଦିନ ନରମି ନରମି

ଯାଉଛ । ଏ ସବୁ କଣ ଏ ଦେଶର ପାଣି ପବନର ପ୍ରତକ୍ରିୟା ?

କାହିଁ—ନାଁତ । ଦୁଲାରୀ ଚଞ୍ଚଳ ହୋଇ ଉଠୁଥିଲା । କହିଲା, ତୁମର ତ ମୁଁ ସମକକ୍ଷ ନୁହେଁ ଯେ ସ୍ୱାଧୀନ ଭାବରେ ମିଳାମିଶା କରିବ ? ଏଘରର କର୍ମଚାରୀ ମୁଁ—ସେବା କରିବାକୁ ଚାକରାଣୀଟିଏ ।

ଚମତ୍କାର ଭାବ ପ୍ରକାଶ କରିପାରୁଛ ଦୁଲାରୀ । କେତେଦୂର ପାଠ ପଢ଼ିଛ ?

'ଦଶମ' ପର୍ଯ୍ୟନ୍ତ । ଖୁସିହୋଇ ଉତ୍ତରଦେଲା ଦୁଲାରୀ ।

ଏତେପାଠ ଯେତେବେଳେ ପଢ଼ିଛ—ବୁଝି ପାରିବ ନିଶ୍ଚୟ ? ତୁମେ ଯୁବତୀ—ଆଉ ମୁଁ ଯୁବକଟିଏ । ବୟସର ସୀମା ପ୍ରାୟ ସମାନ । ଆମ ପରସ୍ପରର ନାନା ପ୍ରକାର ଅସାମଞ୍ଜସ୍ୟ ସତ୍ତ୍ୱେ ମନ ଓ ଦେହର କଣ ଐକ୍ୟ ନାହିଁ ? ଆଉ ହେତକ କଣ ଯଥେଷ୍ଟ ନୁହେଁ ଦୁଲାରୀ ?

ଦୁଲାରୀ ଦେଖିଲା ଜର୍ମାନ ଯୁବକ ଅତ୍ୟନ୍ତ ଭାବପ୍ରବଣ ହୋଇ ଉଠୁଛି । ଉତ୍ତେଜନାରେ ତାର ଚିକ୍କଣ ଭଳି ସଫା ଦେହ ଥରି ଉଠୁଛି । କଣ ଚାହେଁ ଲଏଡ୍ ? ତାର ଏହି ଉଲଗ୍ନ କଥାଭାଷା ଯଦି ତାର ରକ୍ଷଣଶୀଳ ବାପମାଆ କାନରେ ବାଜେ ?

ତୁମେ ବିବାହ କରିଛ ତ ଲଏଡ୍ ?

ଦୁଲାରୀ ଲଏଡ଼କୁ ପ୍ରକୃତିସ୍ଥ କରାଇ ଦେବାକୁ ଖୋପଟାଉଡ଼ା ପ୍ରଶ୍ନଟିଏ କଲା ।

ଲଏଡ୍ ହାଲୁକା ହସଟିଏ ହସିଲା । କହିଲା—ବିବାହ ? ପୁଣି ଏ ବୟସରେ ? ଆଗକୁ ଅନେକ ଦିନ ପଡ଼ିଛି । ଦାୟିତ୍ୱ ନେବାର ସମୟ ଆସିନାହିଁ—ଏବେ ମଉଜ ମଜଲିସ୍ କରିବା ଦିନ ! ଦେଶରେ ଥିଲେ କେତେ ତରୁଣୀ ସଙ୍ଗେ ମିଳାମିଶା କରିବାର ସୁଯୋଗ ପାଇଥାନ୍ତି । ଏଠି ଗୋଟିଏ ସୋମିଆଲ

ଦେଶରେ—ଅନେକ ସଂଖ୍ୟକ ସ୍ତ୍ରୀ ପୁରୁଷ । ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଭାବୁଛନ୍ତି, ସବୁ ତରୁଣ ତରୁଣୀ କାଇଦା କଟକଣା ଭିତରେ । କାହାର ସଙ୍ଗେ ମିଶିବାକୁ ସୁଯୋଗ ମିଳୁନାହିଁ । ଏତେକ କହୁ ଲଏଡ୍ ନୀରବ ହେଲା ।

ଦୁଲଖି ଦେଖିଲା ଲଏଡ୍ ନିଜ ଦେଶକୁ ମନେ ପକାଉଛି । ତାହାର ଯୌବନ ନିଜ ଗାଆଁର କେତେ ବନ୍ଧୁ ଝିଅଙ୍କ କଥା ଭାବ ହେଉଛି । ସେ ନୀରବ ହେଲା ।

ଗୋଟିଏ କଥା କହିବ ରଖିବ ? ଲଏଡ୍ ଆଶାନ୍ୱିତ ହୋଇ ଦୁଲଖିକୁ ଚାହିଁ ଚାହିଁ କହିଲା ।

କି କଥା ଲଏଡ୍ ?

ଲଏଡ୍ ମୁଚୁଳା ତଳୁ ଜର୍ମାନ ସ୍କର୍ଟ ଆଉ ମାଇସୀ ଫ୍ରକଟିଏ ଦୁଲଖି ଆଡ଼କୁ ବଢ଼ାଇ ଦେଇ କହିଲା, 'ପାଞ୍ଚମିନିଟ ପାଇଁ ଏ ଡ୍ରେସ୍ ଟି ବଦଳାଇ ପାରିବ ? ଖାଲି ମନ ପୂରାଇ ଦେଖିନେବି, ତାପରେ ଆଉ କହୁନାହିଁ । ଏଥିପାଇଁ ଯାହା ଟଙ୍କା ମାଗିବ ଦେବି ।'

'ଏଇଥି' ? ଦୁଲଖି ଦୁଷ୍ଟ ହସ ହସି କହିଲା । ଏଇଥିପାଇଁ ଏତେ ଅନୁରୋଧ ! ଦେଉନାହାନ୍ତି ସେ ଫ୍ରକଟିଶା ସାୟା । କିନ୍ତୁ ନଜର ରଖିଥିବେ, ତମର ବାପ ମାଆ ଆସିବାର ସମୟ ହୋଇ ଆସିଲା ।

ଲଏଡ୍ ଦୁଲଖିର ସମ୍ମତି ଦେଖି ଆନନ୍ଦ ହେଲା । ସେ ଆସ୍ତେ ଯାଇ ଦରଜାକୁଲା କବାଟକୁ ଆଉଜାଇ ଦେଇ କିଳଣି ମାରିଦେଲା ।

ଦୁଲଖି ସେହି ଜର୍ମାନ ଡ୍ରେସଟି ପିନ୍ଧି ଅନେକ ମେମସାହେବଙ୍କ ଦେଖା ଯାଉଥାଏ । ସେ ନିଜ ରୂପକୁ ନିଜେ ଉପଭୋଗ କରିବାକୁ ଅଇନା ପାଖକୁ ଚାଲିଗଲା ପ୍ରଥମେ ! ଇସ୍, କଣ ଦେଖା ଯାଉଛି ତାର ଏ ଦେହ ? ନିଜ ରୂପର ପ୍ରତିଛବିକୁ ସେ ପ୍ରଥମେ ଚିହ୍ନି

ପାରିଲ ନାହିଁ । ଦେହକୁ କେତେ ଲାଜ ହେଉଛି ଏ ପିନ୍ ପିନ୍
ପାତଳ ବ୍ଲାଉଜ ଖଣ୍ଡିକ । ସ୍ଲିଭରୁ ଅଧେ ଖୋଲା ପଡ଼ିଛି । ମାଂସଳ
ବକ୍ଷର ଉନ୍ନତ ଅଂଶଟିକ ପଦାକୁ ଅତି ନଗ୍ନ ଭାବରେ ଫୁଟି
ବାହାରୁଛି । ସବୁଆ ଅଣ୍ଟାର ଗୃହଖଣ୍ଡେ ତଳକୁ ଗୃପିହୋଇ ରହିଛି,
ଏହି ଅଦ୍ଭୁତ ପୋଷାକ ଖଣ୍ଡିକ । ଲାନୁ ଦାଣ୍ଟ ପବନ ବାଜି
ଥରି ଥରି ଉଠୁଛି । ପ୍ରଥମ ଜୀବନରେ ନୂଆ କରି ଗୋଟିଏ
ସମ୍ପୂର୍ଣ୍ଣ ନୂତନ ଶୀହରଣ ଅନୁଭବ କଲା ଦୁଲାରୀ । ଜର୍ମାନ
ଦେଶର ତରୁଣୀ ସାହେବାଣୀ ଏଇସ୍ଥାକୁ ପିନ୍ଧି ବଚ୍‌ସ୍ତା
ଉପରେ ଗୃଲେ କେମିତି ? ସେ କଣ ଏଇସ୍ଥା ପିନ୍ଧି ରାଜରକୋଳା
ରାସ୍ତାରେ ଗୃଲିପାରନ୍ତା ? ଦୁଲାରୀ ଆଉଥରେ ନିଜର ଦେହକୁ
ମୁହଁକୁ ଅନାଇଲା । ତନ୍ମୟ ହୋଇ ତାର ରୂପଯୌବନକୁ ଅନୁଭବ
କଲା ପ୍ରତିଛବି ମାଧ୍ୟମରେ । ଏମିତି ସୁଡ଼ୌଳ, ସୁଗୋଲ ଦେହ,
ମୁହଁ । ଯାହା ଭିତରେ ଏତେଟୁକୁ ଏ ପରିବର୍ତ୍ତନ ହେଲା କେମିତି ?

ଲଏଡ଼୍ ଦୁଲାରୀର ଏହି ସ୍ୱପ୍ନ ସୁନ୍ଦର ବେଶ ଦେଖି ବିମୁଗ୍ଧ
ହେଲା । ବିନା ପ୍ରସାଧନରେ ବି ଦୁଲାରୀ ଆଶ୍ଚର୍ଯ୍ୟ ଭାବରେ ସୁନ୍ଦର
ଦେଖା ଯାଉଛି । ଦୁଲାରୀ ସଙ୍ଗେ ତୁଳନା କରିବାକୁ ପରିଚିତ
ଟାଁଇଣ ଜର୍ମାନ ତରୁଣୀମାନଙ୍କ ମୁହଁକୁ ମାନସ ଚକ୍ଷୁ ଭିତରକୁ
ଭିଡ଼ଆଣିଲା । ତାର ମନେହେଲା ଶତ ପ୍ରସାଧନ ସତ୍ତ୍ୱେ ଜର୍ମାନ
ତରୁଣୀ ସବୁ ଦୁଲାରୀର ସ୍ୱଭାବ ସୁଲଭ ସୌନ୍ଦର୍ଯ୍ୟ ସଙ୍ଗେ ସମକକ୍ଷ
ହୋଇ ପାରିବେ ନାହିଁ । ଦୁଲାରୀ ବନସ୍ତ ଭିତରେ ସଜଫୁଟା
ରଙ୍ଗୀନ ଫୁଲଟିଏ । ଦେହରେ ତାର ଯୌବନର ମତାଣିଆ ସୁଗନ୍ଧ ।
ଆଉ ଧୋଟିଆଲ୍ ସେଣ୍ଟର୍ ରେ ଏକଜିତ ହେଉଥିବା ତରୁଣୀ
ସବୁ ରଙ୍ଗ କାଟଙ୍ଗର ଯାଦା ଫୁଲ । ନା ଅଛି ରୂପ, ନା ଅଛି ଗନ୍ଧ !
ମୁହଁର ପାଉଡ଼ର ସ୍ନୋ ଟିକକ ପୋଛି ଦେଲେ ଚାହିଁବାକୁ ମନ
ବଳିବ ନାହିଁ ।

ଲିଏଣ୍ଡ୍ ଦୁଲାରୀକୁ ଆଗ୍ରହରେ ଡାକି ତା'ର ବସିଥିବା [illegible]ଙ୍ଗାର ଅତି ପାଖକୁ ବସିବାକୁ କହିଲା । ଆଖିରେ ତାର ରହସ୍ୟ [illegible]— ସେ ସୁସଜ୍ଜିତ ଦୁଲାରୀ ଦେହରେ ଜର୍ମାନ ଦେଶର ଅତି ସୁନ୍ଦର ତରୁଣୀର ହାବଭାବ ଖୋଜୁଥିଲା ଯେମିତି ।

"କେତେ ସୁନ୍ଦର ଦିଶୁଛ ଦୁଲାରୀ ! ଇଚ୍ଛାହୁଏ ତୁମକୁ ବଧୂ ହୋଇ ଆମର ଦେଶକୁ ନେଇ ଯାଆନ୍ତି ।" ଲିଏଣ୍ଡ୍ ଭାବାବେଶରେ ପ୍ରସ୍ତାବ କଲା ।

କଣ ପାରିବ ଲିଏଣ୍ଡ୍ ? ଦୁଲାରୀ ହସୁଥିଲା ।

ସେଇଆ ତ ଭାବୁଛି । ବର୍ତ୍ତମାନ ମୁଁ ବାପାମାଆଙ୍କ ନିର୍ଦ୍ଦିଷ୍ଟ ଆୟ ଉପରେ ନିର୍ଭର କରୁଛି । ସେଇଥି ପାଇଁ ଅସୁବିଧା । ନହେଲେ ବିବାହ ନିଷ୍ପତ୍ତି କରି ସଙ୍ଗେ ସଙ୍ଗେ ତୁମକୁ କାଉରେ ଧରି ବୁଲନ୍ତି । ଓଡ଼ିଶାର ପ୍ରତ୍ୟେକ ଖ୍ୟାତିସମ୍ପନ୍ନ ସହର ଆମେ ଦେଖନ୍ତେ । ନିର୍ଜନ ଟାଂଗହଳ ଭିତରେ ପଶି ମୁକ୍ତ ପ୍ରକୃତିକୁ ଉପଭୋଗ କରନ୍ତେ । ଆଚ୍ଛା କହିଲ, ଆମେ କଣ ତୁମର ହିନ୍ଦୁ ପ୍ରଥା ଅନୁଯାୟୀ ବିବାହ କରି ପାରନ୍ତେ ନାହିଁ ? ବେଦୀ ଉପରେ ବସି ବ୍ରାହ୍ମଣକୁ କହି ହୋମ କରନ୍ତେ—ଟେଲିଙ୍ଗୀ ବାଜା ବାଜୁ ଥାଆନ୍ତା, [illegible] ଚଉଦିଗ ମୁଖରିତ ହେଉଥାଆନ୍ତା । ତୁମେ ଶାଢ଼ୀ ପିନ୍ଧି ଓଢ଼ଣା ଭିତରେ କାନ୍ଦୁଥାଆନ୍ତ । ଆଉ ମୁଁ ପାଟଯୋଡ଼ ପିନ୍ଧି ତୁମ ପାଖରେ ବସି କୁଳବଧୂ ଲଗାଉଥାଆନ୍ତି । ତା'ପରେ ହାତଗଣ୍ଠି ପଡ଼ନ୍ତା । ତୁମେ ମୋ ହାତକୁ ଆଉ ମୁଁ ତମ ହାତକୁ ଧରି ଥାଆନ୍ତି— ତୁମର ଆତ୍ମୀୟମାନେ ହୁଳହୁଳି ପକାଉଥାନ୍ତେ—ଖୁବ୍ ମଜା ଲାଗନ୍ତା—ନୁହେଁ ?

'ଯୁଦ୍ଧ ଭିତରେ କେଉଁଠି ଯାଇ ବାହାଘରଟିଏ ଦେଖି ଆସିଛ ନା'କଣ ?' ଦୁଲାରୀ ପଚାରିଲା ।

ଆଉ ଏତେଦିନ ଯାଏ ଅଦେଖା ରହିଛି ? ଆମ ଦେଶର ସବୁ ତରୁଣ ତରୁଣୀମାନେ ମଫସଲ ଭିତରେ ପଶି ହିନ୍ଦୁ ଜାତିର ସମସ୍ତ ସଂସ୍କୃତି ଉପଭୋଗ କରୁଛନ୍ତି । ଖାଲି ସେତିକି ନୁହେଁ— ନୂଆ ଜିନିଷଟିଏ ଦେଖିଲେ ଫଟୋ ଉଠାଇ ଆଲବମ୍ ଭିତରେ ବାନ୍ଧି ଦେଇଛନ୍ତି । କାମ ସରିଲେ ଜର୍ମାନ ଯେତେବେଳେ ଫେରିଯିବୁ, ସେ ସବୁ ଦିନ ଆଜିର କଥା ମନେ ପକାଇଦେବ । ମନେ ମନେ ଖୁସିହେବୁ ଆମେ—ସେମାନଙ୍କ ଆଗରେ ଆମର ଆଦର ଭଲ ରହିବ । ସେମାନେ ଭାରତ ଆସିନାହାନ୍ତି—ଆମେ ଆସି ଏଇଟି ହେଉଁ । ସେମାନେ ଭାରତର ରଙ୍ଗୀନ କଥା ଶୁଣିଛନ୍ତି—ଆମେ କିନ୍ତୁ ଆଖିରେ ଦେଖିଛୁଁ । ଆମେ ଯାହା କହିବୁ, ସେମାନେ ବିଶ୍ୱାସ କରିବେ । ଆମେ ଖୁସି ହେବୁ ।

ଦିନେ ଜର୍ମାନକୁ ଫେରିଗଲେ କଣ କହିବ ଲଏଡ଼ ? କହିବ ଏଦେଶ ବଣ ଜଙ୍ଗଲର ଦେଶ—ସାପ, ବାଘର ଘର ଏଇଟି । ଦେଶର ଅଧେ ଲୋକ ନହେଲେ ଭିକ୍ଷୁକ । ଏଇଠିକି ପ୍ରେମ ପଇସା ଦେଲେ ମିଳେ—ସେ ପୁଣି ଅତି ଶସ୍ତାରେ । ଏଇଆ ନା ?

ସେ ନିଜ କାହିଁକି ଭାରତ ଦୁଲାଗି ! ଭାରତ ଭାରି ଅତି ସୁନ୍ଦର ! ଏଠାର ନରନାରୀ ଅତ୍ୟନ୍ତ ସରଳ । କଥାଭାଷାରେ ବ୍ୟବହାରର ମୂଳ ଅଛି । ଆଦର୍ଶବାଦର ଚିର ଉପାସକ ଏ ଜାତି । ଜୀବନ ଦର୍ଶନ ଜନ୍ମ ନେଇଛି ଏଇ ଭାରତ ମାଟିରେ—ସତ୍ୟ, ଅହିଂସାର ଆଲୋକ ଦେଖାଇ ଗର୍ବୀ ଦୁନିଆ ଆଖିରୁ ଅନ୍ଧପୁହୁଳି କାଢ଼ିନେଇଛି । ଈଶ୍ୱର କରନ୍ତୁ, ଯେଦିନ ଫେରିଆସୁ । ଯେଉଁଦିନ ଭାରତ ପୃଥିବୀର ଶୀର୍ଷତମ ଗୌରବ ଅଧିକାର କରିବ । ଆଉ ମୁଁ ସେ ଦିନ ଅତ୍ୟନ୍ତ ଖୁସି ହେବ । କାରଣ ଭାରତରେ ବର୍ଷାବାଦ୍ଧି ଅନେକ ଦିନ କଟାଇ ଦେଇଛି । ଓଡ଼ିଶା ଭଳି ପବିତ୍ର ଦେଶର ଧୂଳିମାଟିରେ ଖେଳିବୁଲି ତାର ଧର୍ମ ନୀତି ଉନ୍ନତ ଭକ୍ତିକୁ ଅନୁଭବ

କରୁଛି । ଆଉ ମୋର ମନେହୁଏ ପ୍ରେମ ତ ସେଇଟି ଅତ୍ୟନ୍ତ ମଧୁର । ଖୋଲା ଆଖିର ଚଞ୍ଚଳ ଗୃହାଣୀ ହୃଦୟର ସରଳ କଥା କହେ । ଜର୍ମାନ ଦେଶଭଳି କୃତ୍ରିମ ହସ ଏଇଠି ନାହିଁ । ନାରୀ କେବଳ ପ୍ରେମ ପାଇଁ ପ୍ରେମକରେ । ସେଇଠି ଦ୍ୱାରୀ ମନର ନିକୃଷ୍ଟ ତରଙ୍ଗ ବନ୍ଧ୍ୟ ନଥାଏ ।

ଆଉ ଏ ଦେଶର ତରୁଣ ତରୁଣୀ ?

ସୂର୍ଯ୍ୟର କିରଣ ଭଳି ସୁନ୍ଦର—ଚନ୍ଦ୍ରର ଜୋଛନା ଭଳି କମନୀୟ । ତରୁଣ ପ୍ରାଣରେ ସ୍ପୃର୍ତ୍ତି ଅଛି । ଆଗ୍ରହ ଅଛି । ତରୁଣୀ ମନରେ ଉଦ୍ଦାମ ଅଛି, ଆବେଗ ଅଛି । ଗୃହାଣୀ ଚପଳ ଓ ଚଳ ଚଞ୍ଚଳ ନୁହେଁ—ସମୁଦ୍ର ଭଳି ପ୍ରଶାନ୍ତ ଓ ଗମ୍ଭୀର ! ତାଙ୍କର ରୂପ ଯୌବନରେ କୁହୁକ ଅଛି । ନବାଗତ ହୃଦୟରେ ଚମକ ବାଡେ଼ ଆବେଗ ଭରେ ।

ଲଏଡ୍‌ର ଆବେଗ ଚଞ୍ଚଳ ମନ ଉଚ୍ଛନ୍ନ ହେଉଥିଲ । ଆଲମାରୀ ଥାକଦେହରୁ ରଙ୍ଗୀନ ସୁରା ବାହାର କରି ପାନପାତ୍ରକୁ ଫଲକ ଭିତରେ ନିର୍ଭ୍ରେ କଲ । ରଙ୍ଗୀନ ସୁରାର ମିଠାଗନ୍ଧ ଦୁଲାରୀ ମନରେ ଅସଂଖ୍ୟ ଉତ୍ତେଜନା ଭରିଦେଉଥାଏ । ପାନପାତ୍ରକୁ ଟେକିଧରି ଦୁଲାରୀକୁ ସେ ପାନପାତ୍ର ଉପରେ ଚୁମ୍ବନ କରିବାକୁ କହିଲ । ଦୁଲାରୀ ଅତ୍ରହାତିଶଯ୍ୟରେ ପାନପାତ୍ରକୁ ଚୁମ୍ବନ କଲ । ଲଏଡ୍ ହସିହସି ସେହି ଚୁମ୍ବନ ଢ଼ଳା ସୁରାକୁ ଏକାନିଶ୍ୱାସରେ ପିଇ ଶେଷ କରିଦେଲ ।

ଲଏଡ୍‌ର ମନ ଏଥର ହାଲୁକା ହୋଇ ଯାଇଥାଏ—ଅଙ୍ଗେ ଅଙ୍ଗେ ତ୍ରୁଲିକର ବନ୍ୟା ଖେଳୁଥାଏ । ସେ ଚପଳ ହୋଇ କହି ବସିଲ—ଦୁଲାରୀ ! ତୁମେ ଅତିସୁନ୍ଦର । ସହରର ପରୀଟିଏ ଭଳି ଲୋଭନୀୟ ! ତୁମେ ଏ ରାଜରଜେଲ ଭିତରେ ସୁନ୍ଦର ପଦ୍ମଟିଏ । ତୁମର ରଙ୍ଗୀନ ଦେହରୁ ସୁରାର ଗନ୍ଧ ଝରେ ! ଚଞ୍ଚଳ

ଆଖିଦାଣ୍ଠାରୁ ପ୍ରଣୟର ସଙ୍ଗୀତ ଫୁଟିଉଠେ । ତୁମର ଏ ସୁଗୋଲ
ଗୁଡ଼ ଆଉ ଦେହ······ଓଃ······

ଲୋଭ ହେଉଛି ଲଏଡ୍ ? ଗୋରା ଲୋକର କଳା
ଦେହ ଉପରେ ଲୋଭ—ଆଶ୍ଚର୍ଯ୍ୟ !

ସେବ ମଣିଷଟିଏ ଦୁଲାରୀ ! ଦେହର ରଙ୍ଗ ବଦଳି
ଯାଇଥିଲେ ବ ସେହି ରକ୍ତ, ସେହି ମନ ! ରକ୍ତମାଂସର ମଣିଷ
ପକ୍ଷରେ ଦେହର ଆସକ୍ତି ତୁଟାଇ ରଖିବା ଏକାନ୍ତ ଅସମ୍ଭବ । ମୁଁ
ତରୁଣ ! ଜନ୍ମ ମାଟିଠାରୁ ଅନେକ ଦୂରରେ—ତୁମର ଏହି ରୂପ
ଲାବଣ୍ୟ ଦେଖି ଆନନ୍ଦ ହୁଏ । ଇଚ୍ଛାହୁଏ ଏକାନ୍ତରେ ବସାଇ,
ତୁମର ଦେହର ସମସ୍ତ ସୁଷମାକୁ ଏକା ଏକା ପିଇଯାନ୍ତି । କିନ୍ତୁ
ଭୟହୁଏ କାଳେ—

ଦୁଲାରୀ ଲଏଡ୍‌ର ଦୁର୍ବଳତା ବୁଝି ପାରିଲା । ଏହି ଦେହ,
ଏହି ମନଉପରେ ଅନେକ ତରୁଣ ମନର ସାମୟିକ ଉତ୍ତେଜନାର
ସ୍ୱାକ୍ଷର ରହିଛି—ସେମାନେ ପାଖରେ ନାହାନ୍ତି କିନ୍ତୁ ସେମାନଙ୍କର
ସାନ୍ନିଧ୍ୟର ସ୍ମୃତି ଗୁଡ଼ି ଦେଇ ଯାଇଛନ୍ତି । କିଏ କେତେ ପ୍ରକାର
ଭଙ୍ଗୀ ଦେଖାଇ, କଥା କହି ତାର ମନକୁ ଟିକିଏ ପାଇଁ ଭୁଲାଇ
ଦେଇଛନ୍ତି । ତା ପରେ ପରେ ସେହି ଜଲନ୍ତ ରୂପକଥାର ପୁନରା-
ବୃତ୍ତି । ତାର ମାଉଁସିଆ ଗଳା ତଳେ ତଳେ ଅନେକ ଚୁମ୍ବନ ଢାଳି
ଯାଇଛନ୍ତି । ସେ ଚୁମ୍ବନର ଦାଗକୁ ସେ ପାଦରେ ଧୋଇ ଲିଭାଇ
ଦେଇଛି । ତାର କେଶପାଶକୁ ବକ୍ଷିପ୍ତକରି ଖେଳାଇ ଖେଳାଇ ମନ
ଭୁଲାଇଛନ୍ତି । ପୁଣିଥରେ ଫାନାଆ ଧରି ସେ କେଶଗୁଚ୍ଛ ସଜାଡ଼ି
ଦେଇଛି । କିଛିକ୍ଷଣ ପାଇଁ ଦେହଭିତରେ ବଜୁଳିର ପ୍ରବାହ ଚୋଳି
ଆଖି ବୁଜି ଦେଇଛି—ତା ପରେ ପୁଣି ଥରେ ସଂଯତ ହୋଇ ଯାଇଛି ।
ଅନେକ ତରୁଣ ମନରେ ଉଚ୍ଛାସକୁ କଳନା କରିଯାଇଛି । ଅନେକ
ପ୍ରଶଂସା ଶୁଣିଛି । ପ୍ରଥମେ ପ୍ରଥମେ ଉତ୍ସାହିତ ହେଉଥିଲା ନିଜର

ରୂପର ଗୌରବ ଶୁଣି—ଅଧିକ ସମୟ ବସି ରୂପଚର୍ଯ୍ୟା କରୁଥିଲା । ଏବେ ବୁଝିଛି ବୟସ ଥିବାଯାଏଁ ରୂପଚର୍ଯ୍ୟା କରେ—ବୟସ ଖସିଗଲେ ରୂପକୁ ଯେତେ ରଙ୍ଗଦେଲେ ମଧ୍ୟ ସରସ ହୁଏ ନାହିଁ ।

ଲଏଡ୍ ତାର ମୁହଁକୁ ସ୍ଥାଣୁଭଳି ଅନେଇ ରହୁଥାଏ । ଦୁଲାରୀର ସମ୍ମତି ସୂଚକ ହସ ଦେଖି ସେ ଚପଳ ହୋଇ ଉଠିଲା । ଦୁଲାରୀକୁ ଦୁଇ ହାତରେ ଝେଙ୍କିଧରି ତାର ବର୍ଦ୍ଧିତ ଯୌବନକୁ ଆଘ୍ରାଣ କରିବାକୁ ଉଦ୍ୟତ । ଲଏଡ୍ ଉତକ୍ଷିପ୍ତ ଥିଲା—ଚଞ୍ଚଳ ଥିଲା ।

ବାହାର କବାଟରେ ଆବାଜ ଶୁଣି ସେମାନଙ୍କ ନିଦ୍ରା ଭାଙ୍ଗିଲା । ଲଏଡ୍ ଦୋଷୀଟିଏ ଭଳି ଛିଟିକିଇ ହୋଇ ଛିଡ଼ାହେଲା । ଦୁଲାରୀ ଜର୍ମାନ୍ ସ୍କର୍ଟ ଖଣ୍ଡିକ ପାଲଟି ପକାଇ ଦେହକୁ ମୁହଁକୁ ସଜାଡ଼ି ନେଲା ପ୍ରଥମେ । ତା ପରେ ବାସନ ଦି'ଟା ଧରି ଭିତର ଅଗଣାକୁ ଚାଲିଗଲା ।

ଲଏଡ୍ କବାଟ ଫିଟାଇ ଫେରିଆସି ଖୋଲା ଉପନ୍ୟାସଟି ଉପରେ ଆଉଥରେ ଆଖିଦେଲା ।

ଦୁଲାରୀ ବାସନ ଦି'ଟା ନେଇଆସି ଲଏଡ୍ର ମା'ଆ ଆଗରେ ଛିଡ଼ାହେଲା, ଆଉ ପଚାରିଲା । ମୁଁ ଏଥର ଯାଇ ପାରେ ମେଡ଼ମ୍ ?

[illegible] ମୁଣ୍ଡି [illegible] ।

ଦୁଲାରୀ ଜର୍ମାନ କ୍ୱାଟର ଗୁଡ଼ି ପିଚ୍ ରାସ୍ତାରେ ପାଦ ଦେଲା । ମନରେ ତାର ଆଶଙ୍କା ଥାଏ—ଦେହ ଭିତରେ କ୍ଳାନ୍ତି ଥାଏ ।

ଲଏଡ୍ ଅକସ୍ମାତ୍ ଆସି ରାସ୍ତା ଉପରେ ଦୁଲାରୀକୁ ଦେଖା-କଲା—ଦୁଲାରୀ ଅଟକିଯାଇ ଲଏଡ୍କୁ ଅର୍ଥଭରା ଚାହାଣୀରେ ଅନାଇଲା ।

ଲଏଡ୍ ପକେଟ୍‌ଭିତରୁ ସୁନ୍ଦର ହାରଟିଏ କାଢ଼ି ଦୁଲାରୀ ହାତକୁ ବଢ଼ାଇ ଦେଇ ଦେଇ କହିଲା, ଦୁଲାରୀ ! ଗତକଥା କାହାର ଆଗରେ ଯେମିତି ପ୍ରକାଶ ନ କର ।

ଲଏର୍‌ ଆଖିରେ ବ୍ୟସ୍ତତା ଥିଲ—ମୁହଁ ଘୋଡ଼ାଇଦେଇ ସଂଙ୍କୋଚ ସ୍ୱଚ୍ଛରେ କଳା ପରଦା ଥିଲ । ଦୁଲଣି ଦେଖିଲ ଲଏର୍‌ ଅନେକ ଡ଼ରିଯାଇଛି । ତାର ଠିକ୍‌ ଆଗରେ ଉଚ୍ଛୃଙ୍ଖଳତା ଆଉ ନାହିଁ । ହସହସ ମୁହଁରୁ ସମସ୍ତ ଆଗ୍ରହ ମରିଯାଇଛି । ଆଖିରେ ଅଛି ନିର୍ବୋଧ ଗୃହିଣୀ ଆଉ ପ୍ରକାରାନ୍ତରେ ଆକୁଳ କ୍ଷମା ପ୍ରାର୍ଥନାର ଭାଷା । ଡରକୁଳ ମନଟିଏ ଅନାଗତ ଆଶଙ୍କାରେ ମରି ମରି ଯାଇଛି ।

ଏଇଥି ପାଇଁ ଏ ଉପହାର ? ଭୟ କରିବନି ଲଏର୍‌—ସମସ୍ତ ଘଟଣା ଆମର ଦୁଇ ଜଣଙ୍କ ଭିତରେ ସୀମାବଦ୍ଧ ରହିବ । ସେ ଆମ ବ୍ୟକ୍ତିଗତ ଜୀବନର ଗୋଟିଏ ଗୋପନ ସ୍ମୃତି । ଦୁଲଣି ଉତ୍ତର ଦେଲ ।

ଖାଲି ଗୋପନ ନୁହେଁ ଦୁଲଣି—ସିଏ ଗୋଟିଏ ଗ୍ଲାନିର ସ୍ମୃତି । ଆଉ ଏ ନୋଟ ବଣ୍ଡାକୁ ଚୃହିଁଲ । ନଗଦ ଦୁଇଶହ ଅଛି ।

ଏ ସବୁ କାହିଁକି ଲଏର୍‌ ? ଶହ ଶହ ଟଙ୍କା ଦେବାର ଅଭିପ୍ରାୟ ?

ଅଭିପ୍ରାୟ ନଥିଲେ କେହି କାହାକୁ ଟଙ୍କା ଦିଏନି ଦୁଲଣି । ଏ ଟଙ୍କା ପଛରୁ ଗୋଟିଏ ସର୍ତ୍ତ ଅଛି । ଆଉ ସେ ସର୍ତ୍ତ ତୁମକୁ ମାନିବାକୁ ପଡ଼ିବ ।

ସର୍ତ୍ତ ? କି ସର୍ତ୍ତ ସିଏ ?

କାଲିଠୁ ଆମଘରକୁ ଆଉ କାମ କରିବାକୁ ଆସିବନି······

ଦୁଲଣି ଆଶ୍ଚର୍ଯ୍ୟ ହୋଇ ଲଏର୍‌ ମୁହଁକୁ ଚୃହିଁ ଥିଲ । ଅଳ୍ପ ସମୟ ପୂର୍ବରୁ ବିବାହ ହେବାର ପ୍ରସ୍ତାବ ଦେଉଥିଲ । ଆବେଗରେ ବଶବର୍ତ୍ତୀ ହୋଇ କଅଁଳ କଅଁଳ କଥା କହି ମନ ଭୁଲଉଥିଲ । ଏବେ ସେ ଆଗ୍ରହ, ସେ ଉତ୍କଣ୍ଠା ମରିଗଲ । ଟଙ୍କା ଓ ଦାମୀ ହାର-ଦେଇ ଗତ କଥା ଭୁଲିଯିବାକୁ କହୁଛି । ସେ ନିଜେ ଲଏର୍‌ର ନକଲି ଚରିତ୍ରରେ ଭୁଲିଗଲ । ନିଜକୁ ନିଜେ ଏଲର୍‌ ଆଗରେ

ହେଉଦେଇ ସେ ନିଜଭିତରେ ସର୍ବନାଶ କଲା । ପରକୁ ଆନନ୍ଦ ଯୋଗାଇ ନିଜ ମନ ଓ ଶରୀରର ହତ୍ୟା କଲା । କିନ୍ତୁ ପ୍ରତିବଦଳରେ ପାଇଲା କଣ ? ଗୋଟିଏ ନିଷ୍ଠୁର ନିବେଦନ ! କାଲିଠୁ ଏ ଦୁଆର ବନ୍ଦ ହେବ । ତା'ପରେ ଅନ୍ୟ ସ୍ଥାନରେ ସୁବିଧା ଗୃହକର୍ତ୍ତା ଖୋଜିବାକୁ ହେବ । ମନ ଭିତରେ ନାରୀତ୍ୱ ତାର ଆର୍ତ୍ତନାଦ କରୁଥିଲା । ଵର୍ତ୍ତମାନ ଜାତି ଉପରେ ଘୃଣା ଆସୁଥିଲା । ସେ ଅବ୍ୟକ୍ତ ଦୁଃଖରେ ଭାଙ୍ଗି-ପଡୁଥିଲା । ଥରିଲା ଥରିଲା କଣ୍ଠରେ ଆଖିର ଲୁହ ପୋଛି ପଚାରିଲା; ଏ ନିର୍ମମ ନିର୍ଦ୍ଦେଶ କାହିଁକି ନିଏଉ ? ମୋର ଭୁଲ କଣ ?

କିନ୍ତୁ ସେ ପ୍ରଶ୍ନର ଉତ୍ତର ଦେବାକୁ ଲିଏଉ ଆଉ ପାଖରେ ନଥିଲା । କିଏ ଜଣେ ନୀରବରେ ସେ ପ୍ରଶ୍ନର ଉତ୍ତର ଛଳରେ କହିଲା ତୋର ଦୋଷ ହେଲା ତୋର ଏହି ବୟସ ଓ ରୂପ ! ଯୌବନକୁ ବେଖାତିରି କରିବାର ପରିଣାମ ! ଲଗାମହୀନ ମନର ନିଦାରୁଣ ପରିଣତି ।

ଦୁଲାରୀ ରାଗିଯାଇ ସେ ନୋଟ ଗୁଡ଼ିକୁ ରାସ୍ତା ଉପରେ ବାଞ୍ଚିଦେଲା । ପବନରେ ହଲି, ହଲି ସେ ସବୁ ଉଡ଼ିଗଲାବେଳେ ଦୁଲାରୀର ମନ ହାଲୁକା ହୋଇ ଉଠୁଥିଲା ।

ନୋଟ ଗୁଡ଼ିକୁ ଏମିତି ନଷ୍ଟ କରିଦେଲୁ ଦୁଲାରୀ ? ଅନେକ କାମରେ ଲଗିଥାନ୍ତା—କଣ କଲୁ ? ଝାଉଁଳି ଉପରୁ ବନ ନାହକ ଡେଇଁଆସି ଦୁଲାରୀ ସମ୍ମୁଖରେ ଛିଡ଼ାହେଲା ।

କିଏ ବନ ନାହକ ? ଦୁଲାରୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

ହଁ ବନ ନାହକ ମୁଁ । କଣ ଭୟ ହେଉଛି ଦୁଲାରୀ । ଜାତି ଭାଇକୁ ଦେଖି ?

ଏହି ସେଇ ବନ ନାହକ । ଯାହାର ନାଁ ଶୁଣିଲେ ରାଉରକେଲା ଭିତରେ—ରାସ୍ତାଉପରେ ଚାଲି ଯାଉଥିଲେ ବୟସୀ ଝିଅ ମୁହଁ ଲୁଚାଇ ରଖେ— ଅ.ଜ ମାରୁଆଡ଼ୀ ବ୍ୟବସାୟୀ ପକେଟ ସମ୍ଭାଳି ଚାଲେ ।

ତାର ଏହି ଅକସ୍ମାତ ଆବିର୍ଭାବରେ ଦୁଲାରୀ ବିଚଳିତ ହୋଇ ପଡ଼ିଲା । କହିଲା ତୋତେ ଗୋଟାଏ ଭୟ କଅଣରେ ନାହାକ ?

ସେଇଯୁ। କହ ଦୁଲାରୀ । ଓଡ଼ିଶ ମାଟିର ଧୂଅ ମୁଁ । ଜର୍ମାନ ଜାତି ଅପେକ୍ଷା ଏ ଦେଶରେ ଝିଅ ବୁଅଙ୍କ ପ୍ରତି ମୋର ଯଥେଷ୍ଟ ଶ୍ରଦ୍ଧା ଅଛି । ବ୍ୟଭିଚାରକୁ ସହ୍ୟ କରି ନ ପାରି ସଂଗ୍ରାମ କରେଁ ବୋଲି ରାଉରକେଲା ମୋତେ ଗୁଣ୍ଡା କୁହେ । ତୁ କଣ ସେଇଆ ଭାବୁଛୁ ଦୁଲାରୀ ?

ଦୁଲାରୀ ନୀରବ ହେଲ ।

ଦୁଲାରୀର ନୀରବତା ଦେଖି ବିନ ନାହାକ କଥାର ଖିଅ ଯୋଡ଼ିଲ । କହିଲ, ରାଉରକେଲାରେ ରାତି ଘନେଇ ଆସୁଛି । ଦେଖୁନୁ ଦୁଲାରୀ ! ଆକାଶରେ ଚନ୍ଦ୍ର ଓ ତାରାର ହେଷଣୀ । ନୀହାରର ନୂଆରଙ୍ଗ ବିଂଶଇ ପାହାଡ଼ ଆଡ଼େ ନଇଁ ନଇଁ ଯାଉଛି । ରାସ୍ତାଘାଟର ଭିଡ଼ ଅସମ୍ଭବ ଭାବେ ବଢ଼ିଗଲାଣି—ଜର୍ମାନ ତରୁଣୀର ଦାମିକା ସ୍କର୍ଟ ରାଉରକେଲାରେ ସ୍ୱପ୍ନ ସଞ୍ଚାର କରୁଛି, ଆଉ ଏ ଓରାଂଝିଅମାନେ ! କେଡ଼େ ବେପରୁଆ ତାଙ୍କର ହସ ଖୁସିର ସଂସାର । ଘରମୁହାଁ ଗୀତର ଲହର ଛୁଟେଇ ଚାଲିଛନ୍ତି । ତରୁଣ ମେକାନିକ୍ ଆସନ୍ନ ରାତିପାଇଁ ଅସ୍ଥାୟୀ ନୀଡ଼ ଖୋଜୁଛି, ବିବାହିତ ପଞ୍ଜାବୀ ଡ୍ରାଇଭର ତାର ପ୍ରିୟତମା ସହିତ ଦୀର୍ଘ ବିଚ୍ଛେଦ ପରେ, ଏବେ ଅତିଶୟ ପ୍ରଗଲ୍ଭ ହୋଇ ଗଲାଣି । ଚାଲିଗଲାବେଳେ ସମସ୍ତ ନାରୀ ମୁହଁରେ ଭସାଣିଆ ଆଖିର ଚାହାଁ ବାଣ୍ଟୁଛି । ଆଉ ଟିକକ ପରେ ରାତି ଗଭୀର ହେବ । ଟେଷ୍ଟର, ଡିକ, ଏଡ୍ ନିଷ୍ଟଙ୍କ ଭାବରେ ବିହାର କରିବେ ଏହି ଇସ୍ପାତ ନଗରୀର ଗୁଡି ଜାଗାରେ । ଟେକ୍ଟରମାନଙ୍କୁ ଅଳ୍ପ ଲାଭଟିଲେ ସେମାନଙ୍କ ମନର ଜୋର ବଢ଼ିଯିବ। ଡାକେରି ଡେଇଁ ଚୋରି କରିବେ । ଏବେ ମଦଖାଇ ଢୁଲେଇ ଢୁଲେଇ ଚାଲୁଛନ୍ତି । ଆସନ୍ନ ସୁଯୋଗର ସ୍ୱାଗତ କରୁଛନ୍ତି । ଆଉ

ତୁ ଏକାକିନୀ ହୋଇ ବୁଲୁଛୁ ? ତୋର ଜର୍ମାନ ତରୁଣ ସାଥିଟି ଗଲା କୁଆଡ଼େ ?

ଦୁଲାରୀ ନଇଁପଡ଼ିଲା, କହିଲା, ବୁଲୁନି ତ ନାହାକ ବସାକୁ ଫେରୁଛି ।

ଏତେ ରାତିରେ ? ତୁ'ତ ଏତେ ଡେରିରେ କେବେ ଫେରୁ ନଥିଲୁ । ସାଥି କିଏ ଅଛି ?

କେହି ନାହିଁ—ଦୁଲାରୀ ଉଦାସ ମନରେ କହିଲା ।

କଣ ଫେରିଗଲା ?

ନାଁ—ସାଥିମୋର କେବେ ନଥିଲା—ଏବେ ମଧ୍ୟ କେହି ନାହିଁ ।

ସାଥି କେହିନାହିଁ ? ରାଉରକେଲାରେ ରାତି ଯାପନପାଇଁ ସାଥିର ଅଭାବ ରହିଛି ? ତୋତେ ଏପର୍ଯ୍ୟନ୍ତ କେହି ମିଳି ନାହାନ୍ତି ?

ମୁଁ କାହାକୁ ଖୋଜି ନାହିଁ ।

ସାଥି ତ ଖୋଜିବାକୁ ପଡ଼େନି ଦୁଲାରୀ ! ରୂପଥିଲେ ତରୁଣୀର ଅନେକ ସାଥି ଜୁଟନ୍ତି, ଖାଲି ଗୃହିଁପାରିଲେ ହେଲା । ଗୃହାଣୀରେ ଉତ୍ତାପର ଢେର ପାଇଲେ ଅନେକ ତରୁଣ-ପତଙ୍ଗ ଝାସଦେବେ—ସେମାନଙ୍କ ଆଶାପ୍ରୀ ପକ୍ଷ ସେ ଉତ୍ତାପରେ ଯିଏଁ ଖଣ୍ଡ ଖଣ୍ଡ ହୋଇଯିବା ପର୍ଯ୍ୟନ୍ତ ସେମାନେ ଚକ୍କର କାଟୁଥିବେ । ଆଉ ତୁ ଦୁଲାରୀ ! ସହଜେ ସ୍ୱାସ୍ଥ୍ୟବତୀ, ରୂପବତୀ । ଦେହରେ ତୋର ଫୁଟିଲା ଫୁଲର ଶ୍ରୀ, ଯୌବନ ତୋର ରଙ୍ଗୀନ ମଦ ଭଳି ତଟକା । ଗୃହିଁଲେ ସାରା ରାଉରକେଲା ତୋର ପାଦତଳେ ପଡ଼ିବ । କିନ୍ତୁ କହୁଛୁ ସାଥି ପାଇନାହୁଁ—ମୋ ସଙ୍ଗରେ ଆସିବୁ ଦୁଲାରୀ ? ମୋ ଘରକୁ ଅତିଥି ହୋଇ ଆସିବୁ ??

ବନ ନାହାକର ଘର ! ଦୁଲାରୀ ହସୁଥିଲା ।

ହଁ ହଁ ଦୁଲାରୀ ! ସୃଷ୍ଟିଛଡ଼ା ବନ ନାହାକର ଘର ! ଗୁଣ୍ଡା-ସର୍ଦ୍ଦାର ବନ ନାହାକର ଘର ! ବନ ନାହାକର ଚରିତ୍ର ଭଲ ସେବ ଅତଶସ୍ତୁ ଖାପଚଡ଼ା—ତଥାପି ମୁଁ ଡର କରୁଛି—ସେଇଟି ସମସ୍ତେ କର୍ତ୍ତା । ଅନ୍ତତଃ ତାହାହିଁ ସେମାନଙ୍କର ଧାରଣା—କିନ୍ତୁ ତାକୁ ହେପାଜତ କରିବାକୁ କେହି ନାହିଁ ।

ବନ ନାହାକ ସୁନ୍ଦରୀ ଦୁଲରୀର ହାତଧରି ଟାକ୍ସି ଭିତରେ ବସାଇଲା ।

ତାଉଆ ରଙ୍ଗର ଦାମୀ ଟାକ୍ସିଟିଏ ରାଉରକେଲାର ଜନ-ଗହଳି ଭେଦ କରି ଅନେକ ବେଗରେ ମାଡ଼ି ଯାଉଥିଲା ।

ପାନ୍‌ପୋଷର ପିଚ୍‌ଢ଼ାଳା ସଡ଼କ ବଙ୍କେଇ ବଙ୍କେଇ ବଢ଼ି ଯାଇଛି ଅନେକ ଦୂରକୁ । ବସ୍ତ୍ରାଘାଟ ନିଶୁନ ପଡ଼ି ଆସୁଥିଲା, ମଝିରେ ମଝିରେ ଲୁହା ପଥର ଭରା ଟ୍ରକ୍‌ଗଡ଼ି ଚମକି ଚମକି ଚାଲୁଥାଏ । ଦୁ'କଡ଼ର ବୁଦୁବୁଦୁକିଆ ବଣ ଖଣ୍ଡିଅ ଭୂତ ଭଳି ଭେଳିକି ସୃଷ୍ଟି କରୁଥାଏ ।

ବରୁଣେଇ ପାହାଡ଼ ଶୋଇ ଶୋଇ ହସୁଥାଏ ଯେମିତି ।

ଦୁଲରୀ ମୁରୁକି ମୁରୁକି ହସୁଥାଏ । ପାଖରେ ଥାଏ ଗୁଣ୍ଡା ସର୍ଦ୍ଦାର ବନ ନାହାକ । ରାଉରକେଲା କହେ ବନ ନାହାକ ଅନେକ ମଣିଷ ମାରିଛି—ଅନେକ ରକ୍ତସ୍ନାନ କରିଛି—କିନ୍ତୁ ତାର ମୁହଁକୁ ଦେଖିଲେ ସେ ମଣିଷମାରୁ ଭଳି ଦେଖା ଯାଉନାହିଁ । ଏତେ ବଡ଼ ଗୁଣ୍ଡାସର୍ଦ୍ଦାର ଏମିତି ଜଣେ ଛେଳିଛୁଆ ଭଳି ନିର୍ବୋଧ ହୋଇପାରେ ।

ଦୁଲରୀ ବନ ନାହାକର ଡାହାଣ ହାତ ପାପୁଲିରେ ହାତ ଦେଲା । ଦେଖିଲା ଯେ ପାପୁଲି ଭିତର ଉତ୍ତେଜନାରେ ଥରି ଥରି ଉଠୁଛି । ଦୁଲାରୀ ହସିବାକୁ ଲାଗିଲା । ସେ ହସରେ ହାଲୁକା ଗୁପ

ରାଉରକେଲାର ବ୍ଲାଷ୍ଟଫର୍ନେସ୍ କଳଚିମ୍ନି ସଙ୍ଗରେ ମିଶି ଏକାକାର ହୋଇଗଲା ।

ରାତ୍ରି ଗମ୍ଭୀର ହୋଇ ଆସୁଛି ।

ଏଇନେ ହୁଏତ ଅସ୍ଥାୟୀ ଶ୍ରମିକ ପଲ୍ଲୀର ମଙ୍ଗଳମ୍ ଘରେ ମହୁଲ ମଦର ଭୋଜି ହେଉଥିବ । ଗୁଳିଖଟିଭ ମୌଳିକ ଗପଚପଡ଼ରୁ ସ୍ପୁଟନିକ୍ ଯୋଜନାମାନ ମଧ୍ୟ ଠିକ୍ କରାହେଉଥିବ । ଆଲୋଚନା ହେଉଥିବ ରାଉରକେଲାର ଏହି ଯାନ୍ତ୍ରିକ ମାଟିରେ କେଉଁ ସୁନ୍ଦରୀ ସୁବ୍ରତ୍ର ଲୋଭନୀୟ ଦେଖାଯାଏ—କାହାର ବଢ଼ିଲା ଝିଅ କେଉଁ-ଭଳି ବେଶ ହୋଇ ବଜାରବୁଲେ, କିଏ କାହାର ଆତ୍ମୀୟ, କାହାର କାହା ସଙ୍ଗରେ ଗୋପନ ପ୍ରଣୟ ଅଛି । ମନଭୁଲା ରସ-ରସିଆ କଥା ।

ସର୍ଦ୍ଦାର ରତନସିଂ ତୋଫାନ ବେଗରେ ଟ୍ରକ୍ ଛୁଟାଇ ଷ୍ଟିଲ୍ କାରଖାନାରେ ପ୍ରଧାନ ଗେଟ୍ ପାଖରେ ହଠାତ୍ ବ୍ରେକ୍ ଦେଲା । ଗେଟ୍ ଦରବାନ୍ ଟ୍ରକ୍ ଚଲାଇବାରେ ବିଳମ୍ବ କଲା । ତେଣୁ ଟିପାଖାତାରେ ଆଖିବୁଲାଇ ନମ୍ବର ମିଳାଇବାରେ ଟିକିଏ ଡେରି ହୋଇଗଲା । ରତନ ସିଂ ରାଗରେ ଫାଟିପଡ଼ି ପଚାରିଲା, ଗେଟ୍ କିପର୍ ହୋଇ ଭୁଲାଉଛୁ ? ହଁ, କମ୍ପାନୀ ପଇସା ତ । ଦଶଆମେ ତାଲ ହୁଆହେଁ । ଉସ୍କୁଲିଏ.........

"ଏତେକ କହୁଥା ବାବୁ ! ଶହଶହ ମୋଟର ଯିବା ଆସିବା ହଉଛି । ଭୁଲ୍ କଲେ ଚଳିବ କେମିତି ? ଦାୟିତ୍ୱ ତୁଲାଇବା କଥା ।

"ମୋଟର ଭୁଲ କରିପାରେ—ଡ୍ରାଇଭର ନୁହେଁ । ମୁହଁ ଦେଖି ଲୋକ ଚିହ୍ନିପାରୁନୁ ? ଗୋଟା ଆଦ୍‌ମୀ ଓର୍‌ ବଢ଼ାବାତ୍‌ !"

ମୁହଁ ଚିହ୍ନାରୁ କଣ ମିଳିବ ? ଗାଡ଼ି ନମ୍ବର ଭିତରେ ସତ୍ୟ । ଆଜିର ଲୋକ ସନ୍ଧାନ ପାଉନଲେ ଛୁଟେଇ ହେଉଛି । କାହାକୁ ବିଶ୍ୱାସ ଅଛି ?

ରତନ ସିଂ ନୀରବ ରହିଲା । ସେଠ୍‌ କପୂର୍‌ଚନ୍ଦ ମିଛ କହୁନାହିଁ । ପ୍ରତ୍ୟେକ ବଡ଼ ବଡ଼ ଅଫିସରଙ୍କର ଭିନ୍ନ ଭିନ୍ନ ମିଜାଜ ! ଜଣେ ଅଫିସରଙ୍କୁ ଯାହା ଭଲ ଲାଗୁଛି, ଆଉ ଜଣଙ୍କୁ ସେହି କଥାଟା ହିଁ ଗନ୍ଧାଉଛି । ଜଣେ ଲେଖିଗଲେ ଆଉ ଜଣେ କାଟିଯାଉଛି । କିଏ ନମସ୍କାର ଦାବୀ କରୁଛି ତ କିଏ ଖୋସାମତ । ସବୁ କଥାକୁ ହଁ ଜୀ ବୋଲିବାକୁ ହେବ । ଏଇଠି ମଣିଷ ମନକୁ କେହି ଚିହ୍ନେ ନାହିଁ, ବିବେକକୁ ପସନ୍ଦ କରେ ନାହିଁ । ଆତ୍ମାକୁ କେହି ସ୍ୱୀକାର କରେ ନାହିଁ । ରାଉରକେଲାର ଇସ୍ପାତ ହାଓ୍ୱା ମଣିଷକୁ ପଥର କରି ତୋଳିଛି । ଟଙ୍କାର ବିନିମୟରେ ପ୍ରତ୍ୟେକ ଲୋକ ନିଜର ଆତ୍ମା ଓ ଆତ୍ମଗାରିମାକୁ ବିକ୍ରୟ କରୁଛନ୍ତି । କିନ୍ତୁ ନିଷ୍ଠାରେ କ୍ଷତି ବା' କଣ ? ପଇସାତ ରୋଜଗାର ହେବ—ପାଞ୍ଚମିନିଟ ପାଇଁ ଆଖିବୁଜି ମୁଣ୍ଡ ନୁଆଁଇ ଦେବାର କୌଶଳ ଟିକକ ଆୟତ୍ତ କରିନେଲେ ମଣିଷ ବଞ୍ଚିଗଲା । ତା'ପରେ ଧନ ଓ ମାନର ପଦବୀ ଆହ୍ୱାନ କରୁଛି । କିନ୍ତୁ ରତନ ସିଂ ସେଇଆ ପାଇ ନାହିଁ ବୋଲି ଡ୍ରାଇଭର ହୋଇ ଦିନ ରାତି ଷ୍ଟିଅରିଂ ଧରିଛି । ତାରି ସାଙ୍ଗରେ କେତେ ଲୋକ ଉପରକୁ ଉଠିଗଲେ । ତା ଗାଁର ସାଥି ଡ୍ରାଇଭର-ମାନେ ପ୍ରମୋଶନ ପାଇ ଷ୍ଟିଅରିଂରୁ ନିସ୍କୃତି ପାଇଲେ । ରତନ ସିଂ ନୀରବ ହୋଇ ଗାଡ଼ି ଷ୍ଟାର୍ଟ କଲା ।

ପ୍ଲାଣ୍ଟ୍ ଏରିଆ ଭିତରେ ଅସଂଖ୍ୟ ଲୋକଙ୍କର କୋଳାହଳ । ପ୍ରତ୍ୟେକଙ୍କ କାର୍ଯ୍ୟବ୍ୟସ୍ତ; ଦଣ୍ଡେ ଛିଡ଼ାହୋଇ ଚାହିଁବାକୁ ଅବସର ନାହିଁ । ପ୍ରାୟ ସମସ୍ତଙ୍କ ହାତ ର ହତିଆର । ଆଦିବାସୀ ଯୁବକର କଳା ମଚମଚ ଦେହ ଉପରୁ ଝାଳର ଝରଣା ଫିଟି ପଡ଼ୁଛି । ଆଦିବାସୀ ତରୁଣୀ ଓଢ଼ଣା ପକାଇ ମାଟି ବୋହୁଛି । ଦେହ ମୁହଁରେ କଟିମିଟିଆ ଚିତା ଉପରେ ନାଲି ଧୂଳିର ଲଘୁ ପ୍ରଲେପ— ପୋହଳାମଳ ସବୁ ଛନ୍ଦାଛନ୍ଦ ହୋଇ ଖାପ୍‌ଛଡ଼ା ଦେଖାଯାଉଛି ! ଖୋସା ଦେହରୁ ବଣୁଆ ଫୁଲର ଗନ୍ଧବି ମଉଳି ଯାଉଛି ।

ରତନ ସିଂ ଠିକ୍ ବୁଲାଇ କୋକ୍ ଓଭନ୍ ଆଡ଼କୁ କଢ଼େଇ ଗଲା । ସମ୍ମୁଖରେ ଆକାଶ ଚୁମ୍ବୀ ଚିମିନୀ । ଡେଙ୍ଗୁ ଛିଡ଼ା ହୋଇ ଚିମିନୀ ଅଗକୁ ଅନିସା କଲେ ମୁଣ୍ଡର ପାଗ ଆପେ ଆପେ ଖସି ପଡ଼ିବ—କୋକ୍ ଓଭନ୍ ଆଉ ଏଲ୍.ଡ଼ି. ପ୍ରସେସ୍ ମଟ୍ରିକର ପଶ୍ଚିମା ଆଉ ଦକ୍ଷିଣୀ କୁଲିଙ୍କର ଭିଡ଼ । ପାଇକସ୍ତୁ ମାଗ ଏକ ନିଃଶ୍ବାସରେ ଶକ୍ତ ଇଟା ବୋହୁଛନ୍ତି । ଜର୍ମାନ ତିଆରି ଇସ୍ପାତ ମିଶା ଇଟା ଭଳି ଦେହର ଗଢ଼ଣ ଅତ୍ୟନ୍ତ ବଳିଷ୍ଠ । କୁନ୍ଦହେଲା ଭଳି ଗୋଡ଼ରେ ହାତରେ ଅନେକ ବଳ, ଅନେକ ଦମ୍ଭ । ଦେହର ଅସୀମ ବଳ ଓ ମନର ଅମାପ ଦମ୍ଭଦେଇ ସେମାନେ ଏହି ଇସ୍ପାତ ନଗରୀର ସୁଦୃଢ଼ ନିଅଁ ଉଠାଉଛନ୍ତି । ରାଉରକେଲା ଏବେ ଦମ୍ଭିଲା ହୋଇ ଛିଡ଼ାହୋଇ ଆସୁଛି । ଆଉ କେତେଦିନ ପରେ ସୁଦୃଢ଼ ହୋଇ ଛିଡ଼ା ହେବ । ଉତ୍ପାଦନ ପ୍ରକ୍ରିୟା ନିର୍ଦ୍ଦିଷ୍ଟ ଭାବରେ କାର୍ଯ୍ୟକାରୀ ହେଲେ ଓଡ଼ିଶା ସୁନାମ ଓ ସୁଖ୍ୟାତିର ମୁକୁଟ ପିନ୍ଧିବ—ସୁଦୂର ବିଦେଶର ଆଗ୍ରହୀ ଲୋକେ ଏ ଦେଶ, ଏ ମାଟିପ୍ରତି ଆକୃଷ୍ଟ ହେବେ । ରତନ ସିଂ ଏହି ଗଢ଼ି ଉଠୁଥିବା ବାସ୍ତବ ସ୍ୱପ୍ନକୁ ମୁଗ୍ଧ ଆଖିରେ ଅନାଇଥାଏ ।

ବ୍ଲାଷ୍ଟଫର୍ନେସର କଳସଙ୍ଗୀତ ଶୁଭୁଛି । ପ୍ଲାଣ୍ଟ୍ ଏରିଆର ପ୍ରତ୍ୟେକ ଅଣୁପରମାଣୁ ସେ ସଙ୍ଗୀତର ସୁମଧୁର ସ୍ପର୍ଶ ପାଉଛି ।

ମେଘନାଦ ଭଳି ଶୋଇ ରହିଥିବା ଟେଲିଂମିଲ୍ ସେ ସଙ୍ଗୀତ,
ସେହି ଶ୍ଳେଷକୁ ମନଭରି ପାନକରୁଛି । ଇଥର ଦେହରେ
ଥରି ଥରି, ନାଚି ନାଚି ମାଡ଼ିଗଲାଣି ବ୍ଲାଷ୍ଟଫରନେସ୍ ର ଗୀତ,
ତିକ୍ତ ଅଥଚ ଉଲ୍ଲାସ ଓ ଆଶାପୂର୍ଣ୍ଣ ସଙ୍ଗୀତ । ସେ ସଙ୍ଗୀତ
ବିଜ୍ଞାନର ଜୟଗାନ କରୁଛି—ଅତି ଶ୍ରେଷ୍ଠ ଏହି ମଣିଷ ଜାତିର
ବିରାଟ ବୁଦ୍ଧିର ଚାଟେଫ୍ କରୁଛି । ବିଶାଳ, ବିକ୍ଷିପ୍ତ ଏହି ଧରଣୀ
ପୃଷ୍ଠରେ ଅତି ନଗଣ୍ୟ ଏହି ମଣିଷ ଜାତି । ଦିଗନ୍ତ ବିସ୍ତୃତ ସାଗର,
ସୀମାହୀନ ଆକାଶ ତୁଳନାରେ କେତେ ନଗଣ୍ୟ, ତାର ସ୍ଥିତି
ଓ ସ୍ଥାପକତା ! ତଥାପି ଅତି ଅଦ୍ଭୁତ ତାର ମନର ଖିଆଲ—
ମସ୍ତିଷ୍କର କଳା କୁଶଳତା ! ସେ ଦିଗନ୍ତ ବ୍ୟାପି ସାଗର, ଅମାପ
ଅକଳନ ଆକାଶ ଭେଦ କରି କଳ୍ପନା ଅସ୍ତ୍ରକୁ ନିକ୍ଷେପ କରେ ।
ଆଜ ପ୍ରକୃତ ହାର ମାନେ ।

ରତନ ସିଂ ଘଡ଼ିଏ କାଳ ଅଟକିଗଲା ଏହି ବିଶାଳକାୟ
ବ୍ଲାଷ୍ଟଫରନେସ୍ ଆଗରେ । ଟନ୍ଦ ଦେହରୁ ଝରଣା ଭଳି ବୋହି
ଆସୁଥିବା ତରଳ ଲୁହାର ଅବିଶ୍ରାନ୍ତ ସୁଅକୁ ଲକ୍ଷ କଲା । ପଥର
ଫାଟି ପାଣିହୋଇ ଯାଉଛି—ଆଉ ଝରୁଛି କଞ୍ଚା ଲୁହାର ସୁଅ !
ଅଳ୍ପ ସମୟପରେ ରାସାୟନିକ ପ୍ରକ୍ରିୟାରେ ଲୁହାର ପ୍ରକୃତ
ଅବସ୍ଥାକୁ ଫେରି ଆସିବ । କଠିଣ ଲୌହ ଖଣ୍ଡକୁ ଦେଖି ଅନୁମାନ
କରିହେବ ନାହିଁ । ଯେ ଏହା କେବେ ପାଣିପରି ତରଳ ଥିଲା ।
ଲହୁଣୀ ଭଳି କୋମଳ ଥିଲା । ରାଉରକେଲାର ବକ୍ଷ ଉପରେ ଏହା
ଗୋଟିଏ ରହସ୍ୟମୟ ସୃଷ୍ଟି । ସେ ଦିନର ଅରମା ବଣ ଜଙ୍ଗଲ
ଯେଉଁ ଏ ... ନ, ନିକାଞ୍ଚନ ରାଉରକେଲାକୁ ଦେଖି କିଏ କେତେ
କଳ୍ପନା କରି ପାରୁଥିଲା ଯେ ଏହାଦିନେ ଇସ୍ପାତ ନଗରୀକୁ
ଜନ୍ମ ଦେବ ? ନିଶା କାଳର ସ୍ୱପ୍ନପରି ରାଉରକେଲାର ରଙ୍ଗ
ବଦଳି ଯାଉଛି । ରାଉରକେଲା ବଦଳିବା ସଙ୍ଗେ ସଙ୍ଗେ ତା'ର

ମାଟିର ସରଳ ଅଧିବାସୀ ବି ବଦଳି ଗଲେଣି । ସେମାନେ ଏବେ ବିଗତ କଥା ପାଶୋରି ପକାଉଛନ୍ତି । ନୂଆ ଦୁନିଆର ରଙ୍ଗୀନ ଦୁନିଆର ସଙ୍ଗେ ପରିଚିତ ହୋଇ ସାରୁଛନ୍ତି, ସେମାନେ ନୂଆ ହୋଇ ରାଉରକେଲାରେ ପାଦ ଦେଲେ । ଅତୀତ ମନେ ପଡୁନାହିଁ , ମନେ ନ ପଡ଼ିବାହିଁ ଭଲ !

'ଏଲ୍. ଡ଼ି. ପ୍ରସେସ୍' ପାଖର ରେଲ ଲାଇନ୍ କଡ଼ରେ ଛିଡ଼ା ହୋଇ ଜର୍ମାନ ତରୁଣଟିଏ ଝାଳ ପୋଛୁଥିଲା । ଜର୍ମାନ ଦେଶ ଅନେକ ଦୂର । ସେଇଠି ବରଫ ଭରା ଓଦା ପବନ ବହେ, ସୂର୍ଯ୍ୟକିରଣ ସ୍ୱପ୍ନଭଳି କ୍ୱଚିତ୍ ଦେଖାଦିଏ । ବରଫ ମିଶା ମାଟିରେ ସୂର୍ଯ୍ୟକିରଣ ପଡ଼ିଲେ ଜର୍ମାନ ନରନାରୀ ଲକ୍ଷ୍ୟ କି ଆଖିରେ ଅନାଇ ରହନ୍ତି । ତାଙ୍କର ସେହି ଲୋଭୀ ଗୃହିଣୀ କହେ, ସେ କିରଣକୁ ସେମାନେ ଏକା ନିଶ୍ୱାସରେ ପିଇ ଯାଆନ୍ତେ । ମୁଠା ମୁଠା କିରଣ ଆଣି ମୁଣ୍ଡରେ ଦେହରେ ବୋଳି ହୁଅନ୍ତେ । କିନ୍ତୁ ରାଉରକେଲାର ରୌଦ୍ର । ଏଇଠି ବୈଶାଖ ପବନ ବୋହିଆଣେ ଲେଲିହ ଅଗ୍ନିର ଉତ୍ତାପ ।

ପାହାଡ଼ ଘେରା ରାଉରକେଲା, ଚୈତ୍ର ମଧ୍ୟାହ୍ନରେ ଫୁଟିଲା ପାଣି ଭଳି ଟଳମଳ ହେଉଥାଏ । ବେଳେ ବେଳେ ପଶ୍ଚିମା ଝାଞ୍ଜି ବୋହି ରାଉରକେଲାକୁ ଅସ୍ଥିର କରି ପକାଏ । ବିଦେଶାଗତ ଅତିଥି ଅଣ ନିଶ୍ୱାସୀ ହୋଇ ଆର୍ତ୍ତନାଦ କରନ୍ତି । ପ୍ରଚଣ୍ଡ ରୌଦ୍ର ସାଙ୍ଗକୁ ଜଳର କୃତ୍ରିମ ଦୁର୍ଭିକ୍ଷ ସମସ୍ତଙ୍କ ମନରେ ଚିନ୍ତାର ବହଳ ପରଦା ଢାଙ୍କିଦିଏ । ତରୁଣ ଜର୍ମାନ ମେକାନିକ ଝାଳରେ ଜୁଡ଼ୁବୁଡ଼ୁ ହୋଇଗଲାଣି । କାହିଁ ଜର୍ମାନ ଦେଶ ଆଉ କାହିଁ ଏହି ପାହାଡ଼ ଘେରା ରାଉରକେଲା ! ମେସିନ୍ ନିର୍ଗତ ଗରମ ବାଷ୍ପ, ଉତ୍ତପ୍ତ ବାୟୁମଣ୍ଡଳର ଜଳନ୍ତାକୁ ଆହୁରି ତୀବ୍ର, ଆହୁରି ଅସହ୍ୟ କରି ପକାଉଛି । ତଥାପି ଜର୍ମାନ୍ ମେକାନିକ କାମ କରୁଛି । ତାର ଦେଶର ସୁନାମ ବଞ୍ଚାଇ ରଖିବାକୁ ସତେ ଯେମିତି ସେ ଦୃଢ଼ସଙ୍କଳ୍ପ ।

ରତନ ସିଂ ମୁହଁଫେରାଇ ଅନାଇଁଲା । ବସ୍ତା କଡ଼େଇ
କଡ଼େଇ ଗୁଲବୀ କୁମ୍ଭ ଫଣର ଉଡ଼ାଇ ବେଣୀରବାସ୍ନାରେ ଗୁଳାଉଅଛି ।
ଗୁଲବୀ ଗୋଲାପ ଫୁଲପରି ସୁନ୍ଦର ଦେଖାଯାଉଛି । କର୍ମକ୍ଳାନ୍ତ
ଶରୀରରେ, କ୍ଳାନ୍ତ ଚେତନାରେ ଯୌବନଛଟା ଫୁଟି ଉଠୁଛି । କ୍ଳାନ୍ତ
ଅପନୋଦନ ପାଇଁ ସତେ ଯେମିତି କର୍ମମୁଖର ଜୀବନଦ୍ୱଁ ତାର
ଆବଶ୍ୟକ । ଆଲୁଲାୟିତା କେଶା ଗୁଲବୀ ଉଦ୍ଦେଶ୍ୟରେ ରତନ ସିଂ
ମିଠିମାରିଲା । ଭାବିଥିଲା ଅବାଞ୍ଛ ପାଇବା ପରେ ଗୁଲବୀ ସେଇଠି
ଅଟକି ଯିବ । ହସହସ ମୁହଁରେ ତାର ଆହ୍ୱାନର ଉତ୍ତର ଦେବ ।
ତାର ସାନ୍ନିଧ ପାଇଲେ ଶନିବାରର ସନ୍ଧ୍ୟା ସାର୍ଥକ ହେବ । ସକାଳ
ପାହିଲେ ରବିବାର । ରାଉରକେଲାର ରବିବାର ବଜାରରେ
ସେମାନେ ମନଇଚ୍ଛା ଦୂର ବୁଲିବେ । ଲୋକ ଭିଡ଼ରେ ଦେହକୁ ଦେହ
ଲଗି ଯାଉଥିବ । ଗୁଲବୀର ସୁସ୍ଥଦେହର ସାନ୍ନିଧ ପାଇଁ ଯୌବନ
ତାର ସାର୍ଥକ ହେବ । ସର୍ବାଙ୍ଗରେ ଲହରାଇ ଉଠିବ ପୁଲକର
ବନ୍ୟା, ଶିହରଣର ସାର୍ଥକ କବିତା । ମହୁଲ ମଦର ମତୁଆ
ମାଦକତା ଗୃଖି ସେ ପ୍ରବାସ ଜୀବନ ପାଶୋରି ପକାଇବ ।

ଆଉ ଗୁଲବୀ ? ସିଏ ହୁଏତ ପ୍ଲାଷ୍ଟିକ ଫୁଲ ଓ ନକଲି ହାର
ପାଇଁ ଅର୍ଦ୍ଧଳା କରିପାରେ । କେତେଟା ଦାମ ! ଛ'ଅଣା ପକାଇଲେ
ରୂପାର ପ୍ରଲେପଯୁକ୍ତ ପ୍ଲାଷ୍ଟିକ ଫୁଲ— ଆଉ ଆଠଣା ଦେଲେ
ଅମୃତସର ସୁନାହାର । ଗୁଲାବୀ ସେ ସବୁ ନକଲି ଗହଣା ଓ ଫୁଲ
ପିନ୍ଧିଲେ ଅପୂର୍ବ ଦେଖାଯିବ । ବର୍ତ୍ତମାନ କଲୋନୀର ଅଧିବାସୀ
ପରିଚାରିକାଠାରୁ ଆହୁରି ସୁନ୍ଦର, ଆହୁରି ଆକର୍ଷଣୀୟ ହେବ ।
ରତନ ସିଂ ଆସନ୍ନ ଭବିଷ୍ୟତର ସ୍ୱପ୍ନେଲି ଚିନ୍ତାରେ ନିମଗ୍ନଥାଇ
ଗୁଲାବୀକୁ ଅପେକ୍ଷା କରିଥିଲା ।

ଗୁଲାବୀ ସେପଟୁ ବାଟ ଦେଇ ନିସଙ୍କୋଚରେ ଗୁଳାଉଥିଲା ।
ଆଖିରେ ତାର ଆସକ୍ତିର ଗନ୍ଧ ନ ଥିଲା । ରତନ ସିଂ ସାମନାରେ
ମୁଣ୍ଡର ପଥର ବୋଝକୁ ଟିକିଏ ସଳଖାଇ ନେଲା କେବଳ ।

ରତନ ସିଂ ଦରଦ ଦେଖାଇବାକୁ ଗୁଲବୀ ପାଖକୁ ଲାଗି ଆସି କହିଲା, ପଥର ବୋଝ କଷ୍ଟ ହେଉଛି ଗୁଲ୍‌ବୀ ?

"କଷ୍ଟ ? କଷ୍ଟ କ ଜିନିଷ ?"

ଗୁଲବୀ କଷ୍ଟ କଣ ଜାଣିନାହିଁ । ପଥର ବୋଝର ଭାରକୁ ତାର ଖାତିର ନାହିଁ କି ରତନ ସିଂର ଦରଦଭରା କଥା ପ୍ରତି ସହାନୁଭୂତି ନାହିଁ । ନାରୀ ହୋଇ ହୃଦୟହୀନା ହେଲେ ସେ ହୁଏ ପଲାଶ ଫୁଲ । ରଙ୍ଗ ସଙ୍ଗରେ ସୁଗନ୍ଧ ନାହିଁ । ନରମ ପାଖୁଡ଼ା ପରି ଢଙ୍ଗଲତାରେ କାମନାର ପରାଗ ନାହିଁ ।

ସର୍ଦ୍ଦାର ରତନ ସିଂର ରସିକତା ଗୁଲବୀ ଆଗରେ ହାର ମାନିଲା । ତାର ପୌରୁଷ ପ୍ରଥମଥର ପାଇଁ ଗୋଟିଏ ଅବିବାସୀ ଝିଅ ଆଗରେ ପରାଜିତ ହେଲା । ନିଷ୍ଫଳ ଅଭିଳାଷ, ଅନ୍ତରାତ୍ମାକୁ ଦହନ କଲା କେବଳ । ତଥାପି ସେ ଗୁଲବୀ ପ୍ରତି ଅଧିକ ଆକୃଷ୍ଟ ହେବାକୁ ଲାଗିଲା । ଯୌବନ ଯେଉଁଟି ହାତମାନେ ସେଇଟି ଆଗ୍ରହ ବଢ଼େ, ଉତ୍କଣ୍ଠା ବଢ଼େ ! ସହଜ ଲଭ୍ୟ ପଦାର୍ଥ ମନଭିତରେ ଆଲୋଡ଼ନ ସୃଷ୍ଟି କରି ପାରେନାହିଁ ।

ରତନ ସିଂ ତାର ପରାଜୟକୁ ଦୀର୍ଘ ନିଶ୍ୱାସ କ୍ଷେପ କରୁ କରୁ କହିଲା, ହାୟରେ ଜାନ୍ । ଏ ଯୌବନ ଆଉ ତାର ଉପରେ ଏ ପଥର ବୋଝ ?

କାହାକୁ ଅପେକ୍ଷା କରିଛରେ ସର୍ଦ୍ଦାର ? କୁସୁମ ଅକସ୍ମାତ ପହୁଞ୍ଚି ଯାଇ ରତନ ସିଂକୁ ପ୍ରଶ୍ନ କଲା ।

ଅପେକ୍ଷା କରିଥିଲି—କିନ୍ତୁ ଏବେ ଆଉ ନାହିଁ ?

କାହିଁକି ? କଣ ଧୋକା ଦେଲା ??

ବାଉରିକେଲରେ ଏମିତି ଝିଅ ଅଛି—ଯିଏ ରତନ୍ ସିଂକୁ ଧୋକା ଦେଇପାରେ ! ତୁ କହିଲୁ କୁସୁମ୍ ! ତୁ କଣ ଏକଥାକୁ

ବିଶ୍ୱାସ କରୁ ? ରତନ୍ ସିଂ ପର୍ଯ୍ୟନ୍ତ ଅଭିଳାଷକୁ ଗୋପନ ରଖିବାକୁ ନିଶ ଉପରେ ହାତ ବୁଲଉଛି ।

କୁସୁମ ହସିଲା । ଆଖିରେ ତାର ଦୁଷ୍ଟାମୀର ଭଙ୍ଗିମା । ଅନାଇଁ କହିଲା, ଗୁଲବୀ ସେଥିପାଇଁ ହାତଦେଇ ଫେରୁଛି । ଗୁଲବୀର ମୁହଁ ଉପରେ ସର୍ଦ୍ଦାର ରତନ ସିଂ ର ଲୋଭିଲା ଆଖି ଚକର କାଟୁଛି ।

କିଏ ଯେ ଟୋକଆ ଆସୁଛି, ତାକୁ ଚିହ୍ନିଛୁ କୁସୁମ୍ ?

ଚିହ୍ନିନି ? ସେ ପରା ମୋର ପଡ଼ୋଶୀ । ବଙ୍ଗାଳିର ସାବତ ପୁଅ !

ଆଜି ତାର ଭଉଣୀ ଦୁଲବୀ ପରିଚାରିକା ହୋଇଛି ନୁହେଁ ? ବାପ ଗୁରୁଆ ଯାଇ ଜେଲ ହାଜତରେ । ସାବତ ମା'ଆ ଅପେକ୍ଷା କରୁଛି ଗୁରୁଆ ଓସ୍ତାଙ୍କୁ । ତଥାପି ଏହି ଉଦ୍ଧତ ଟୋକଆର ବାହାପ ଦେଖ ! ଭଉଣୀକୁ ଚାବୁକ ମାରିଲେ ଗୋଡ଼ତଳେ ପଡ଼ିବ । ଆଜି ଏହାକୁ ପିଟି ମାରିଲେ ବି ଶୁଭୁନାହିଁ । ଅଜବ ନାହିଁ ଧ ଗମ୍ଭୀର ?

କ'ଣ କହୁଛୁରେ ସର୍ଦ୍ଦାର ତୁ ? ଗୁଲବୀ ବେ ଅଜବ, ତାକୁ କ'ଣ ବୋଲି ପାଇଲୁକି ? ଖାଇବା ବିନା ସିଝି ମରିଯିବ ପଛକେ, ହାତ ପତାଇବ ନାହିଁ—ସେଠା ଆଦିବାସୀ ଝିଅଟଏ । ଭଉଣୀ ସେନା ମିଶନରେ ନାଁ ଲେଖାଇ ପରିଚାରିକା ହେଲା—କିନ୍ତୁ ଭାଇ ବଙ୍ଗି ପାଖରୁ ଶିଖି ଶିଖି ପୂରୁଖା । ଓଡ଼ଣା ତାର ଅତି ସବଳ—ମନ ନ ପାଇଲେ ଦୂରକୁ ଦୂରକୁ ଉଡ଼ିଯିବା ସିନା, ଧରାଦେବ ନାହିଁ । ଆଦିବାସୀ ଝିଅଟି !

ତୁ କଣ ଆଦିବାସୀ ଝିଅ ନୋହୁ ?

କୁସୁମ ମୁହଁରେ ଭାବାନ୍ତର ପରିଲକ୍ଷିତ ହେଲା । ସ୍ୱାମୀ ତାର ମଦ୍ୟପୀ ହୋଇ ଘରେ ମୁହଁ ପୂରାଏ ନାହିଁ । କାରଖାନା ହେବା ପୂର୍ବରୁ କେତେ ସରଳ କେତେ ସୁନ୍ଦର ଥିଲା ତାର ଚରିତ୍ର । ବିସ୍ମୃତିକଙ୍କ ଶାଳଗଛପରି ସବଳ ଥିଲା ତାର ଦେହ ଓ ମନ ।

କାରଖାନା ଖୋଲୁହେବା ପରେ ଗୃକଗ୍ନ ଖଣ୍ଡେ ଯୋଗାଡ଼ କରିଛି କି ନାହିଁ ଅମଦାନୀ କରି ବସିଲ ପାନ ସିଗାରେଟ । ତାପରେ ପରେ ବିଦେଶୀ ମଦ ଗୃହିଲ । ଏବେ ପୋଷମରା ମିଆଁଶାଳ ଗଣ୍ଡିଭଳି ଚୁର୍ଣ୍ଣ, ଦୁର୍ବଳ ହୋଇ ପଡ଼ିଛି । ତଥାପି ଶୋଇ ଘର ନାହିଁ—ସଂସାର ଚଳାଇବାକୁ ଅଣ୍ଟାରେ ପଣତ ଭିଡ଼ି ବାହାରିଥିଲ କୁସୁମୀ । କିନ୍ତୁ ରାଉରକେଲାର ସୁସଭ୍ୟ ସମାଜ ସେତକ କରାଇ ଦେଲନାହିଁ । ତାର ଏକାନ୍ତ ଜୀବନର ସୁଯୋଗ ନେଇ କ୍ଷଣିକ ଲାଳସାରେ ସାଥି କଲ ତାକୁ । ଲୋକାପବାଦରେ କ୍ରମେ ମିଏ ବୁଡ଼ିବାକୁ ଲଗିଲା । ସୁସ୍ଥ ପରିବାର ତାର ଉପସ୍ଥିତିକୁ ଘୃଣା କରିବାକୁ ଲଗିଲେ । କ୍ରମେ ପେଟପୋଷିବାକୁ ବାରବନିତାର ହୀନ ଜୀବନକୁ ଆଦରି ନେଲା । ସେ କଥାସବୁ ମନେପଡ଼ି କୁସୁମୀର ପ୍ରସନ୍ନ ବଦନମଣ୍ଡଳ ଅଶ୍ରୁମୁଖୀ ହେଲ । ବିବ୍ରତ ବଦନା କୁସୁମୀ ତାର ଅତୀତପାଇଁ ଅନୁତାପ କରୁଥିଲା । ରତନ ସିଂକୁ ଉତ୍ତର ଦେଲ—ରାଉରକେଲାର ଝିଅସବୁ ଆମ ଜାତିନିୟମର ବନ୍ଧନରେ ସର୍ଦ୍ଦାର । ସେମାନେ ବର୍ତ୍ତମାନ ଯେମିତି ହୋଇ ଯାଇଛନ୍ତି, ପୂର୍ବରେ ସେମିତି ନଥିଲେ । ଏ ନିଆଁଲଗା ରାଉରକେଲା ତାଙ୍କୁ ସେମିତି କରିଦେଇଛି । ରାଉରକେଲାରେ ବର୍ତ୍ତମାନ ଯାହା ଦେଖାଯାଉଛି, ସେ ସବୁ ଏହି ଆଠଣିକିଆ ସୁନାହାର ଭଳି ନକଲି । ଗୁଲବୀ କିନ୍ତୁ ଅସଲି । ଆଗରେ ଯାହା ଥିଲା ଏବେ ମଧ୍ୟ ସେଇଆ ରହିଛି । ଖାଣ୍ଟି ସୁନା ମୁଣ୍ଡା ।

ଗୁଲବୀ ମୁହଁ ଲୁଚାଇ ନିଜ କାମକୁ ବାହାରି ଗଲା । ସର୍ଦ୍ଦାର ରତନ ସିଂ ଘଣ୍ଟା ଦେଖି ବ୍ୟସ୍ତ ଭାବରେ ପାଦ ବଢ଼ାଇଲ ଆଗକୁ ।

ରତନ ସିଂର ମନ୍ଥର ଗତି, ମ୍ଳାନ ବଦନ ସୂଚାଇ ଦେଉଥାଏ ସେ ନିଷ୍ଠୁର ଭାବରେ ପରାଜିତ ହୋଇଛି ଗୋଟିଏ ତରୁଣୀ ପାଖରେ ।

ପାନପୋଷଠୁ କଲିକତା ପାସେଞ୍ଜର ଛଡ଼ାହେଲା ବେଳକୁ ଅନ୍ଧାର ହୋଇ ଯାଇଥାଏ—ଅସ୍ତଗାମୀ ସୂର୍ଯ୍ୟର ଲୋହିତ କିରଣମାଳା ସେତେବେଳକୁ ନିଶ୍ଚିହ୍ନ ହୋଇ ଗଲେଣି । କ୍ରମେ ଦୂର ପାହାଡ଼, ଦୂରତର ଥିବା ଗଛ ଅଦୃଶ୍ୟ ହେଲା ।

ଗୁରୁଆ ଓରାଂ ଆଖି ମଳି ମଳି ଗୁହାଁଳି ବ୍ରାହ୍ମଣୀନଦୀ ରେଲ୍‌ପୋଲ ତଳେ ଛଳ ଛଳ ହୋଇ ବୋହି ଯାଉଛି । ଗତିରେ ତାର ଅପୂର୍ବ ଛନ୍ଦର ରାଗିଣୀ । ଅନନ୍ତକାଳ ପାଇଁ ସେ ଅସର ସଙ୍ଗୀତର ପୁନରାବୃତ୍ତି କରୁଛି । ଦର୍ପଣ ପରି ଉଜ୍ଜ୍ୱଳ ଜଳରେ ଆକାଶର ରେଶମୀ ରଙ୍ଗ ଲେଖି ହୋଇଛି—ତାର ଭିତରୁ ଫୁଟି ବାହାରୁଛି ପରିବର୍ତ୍ତନଶୀଳ ଜୀବନ ଓ ଜଗତର ଅତି ଅଦ୍ଭୁତ ଛବିମାଳା । ମଣିଷ ଶିଶୁ ଓ ଯୌବନାବସ୍ଥା ଅତିକ୍ରମ କଲାପରେ ବୃଦ୍ଧ ହୋଇଯାଏ । ମନ ଭିତରୁ ସମସ୍ତ ଉନ୍ମାଦନା ମରି ମରି ଯାଏ । ଅନାଗତ ଆଶଙ୍କାରେ ଚମକି ଚମକି ମନ ଓ ଶରୀର ଆର୍ତ୍ତନାଦ କରେ—ସେ ଏକ ନିସ୍ତବ୍ଧ ଆର୍ତ୍ତନାଦ—ଜୀବନ ତୃଷ୍ଣାର ଅଦ୍ଭୁତ ରୂପ । କିନ୍ତୁ ଏହି ବେଗମତୀ ବ୍ରାହ୍ମଣୀ କାଳକାଳଯାକ ବୋହୁଥିଲେ ବି ମରୁନାହିଁ । ମାନବର ଅଭିନୟକୁ ଦର୍ଶକରୂପେ ନିରୀକ୍ଷଣ କରୁଛି—ସହସ୍ର ମାନବର ଲକ୍ଷାଧିକ ତୃଷ୍ଣାକୁ ନୀରବ ରହି ଅନୁଭବ କରୁଛି । ଅସଂଖ୍ୟ ଲୋକ ମୁହଁର ଅଶ୍ରୁ ଓ ଆନନ୍ଦର ନୀରବ ଦ୍ରଷ୍ଟା ସିଏ । ଆନନ୍ଦର ଇତିହାସ ଓ ଦୁଃଖର ସମାଚାରକୁ ଏକାଭଳି ଶୁଣିଛି । କିନ୍ତୁ ତାର ସେଥିରେ ପରିବର୍ତ୍ତନ

ନାହିଁ—ସେ ବୋହୂ ଆସିଛି ଅନନ୍ତକାଳ ଧରି, ଆଉ ବୋହୂ ଚାଲିବ ଅନ ଗତ ଭବିଷ୍ୟତର ଆଗମନ ଦିବସ ପର୍ଯ୍ୟନ୍ତ । ସ୍ରଷ୍ଟାର କରଣୀରେ ସେ ଏକ ଅଭୁତ ପ୍ରହେଳିକା ।

ଗୃରୁଆ ଓ ବ୍ରାହ୍ମଣୀ ନଦୀକୁ ବଲ ବଲ କରି ଅନାଇଲା । ପାଞ୍ଚବର୍ଷ ପୂର୍ବେ ତାକୁ ଯେମିତି ଦେଖି ଯାଇଥିଲା, ସେ ସେମିତି ରହିଛି—ପିଲବେଳୁ ବ୍ରାହ୍ମଣୀନଦୀ ସେମିତି ଚାଲିଛି । ରେଲପୋଲ ହେବା ଆଗରୁ ବି ସେମିତି ଥିଲା । ହୁଏତ ଅଳ୍ପ ତାର ଅପେକ୍ଷାକୃତ କ୍ଷୀଣଥିଲ । ବୟସ ବଢ଼ିବା ସଙ୍ଗେ ସେ ଟିକାଏ ପୁଷ୍ଟ ଓ ପୃଥୁଳ ହୋଇ ଉଠିଛି । କୋଇଲି ଓ ଶଙ୍ଖନଦୀ ତାକୁ ଦିନକୁ ଦିନ ପୁଷ୍ଟ ଓ ବିସ୍ତୃତ କରିବାରେ ଲାଗିଛନ୍ତି ।

ପାନପୋଷରେ ପାଦ ଦେଲେ ଶିବରାତ୍ରିର ବେଦବ୍ୟାସ ମେଳା କଥା ମନେପଡ଼େ । ଗୃରୁଆ ଓ ବଂର ଅନେକ ଦିନ ତଳର ସେହି ଅଭୁଲ ସ୍ମୃତି-ବହୁଳ ଶିବରାତ୍ରି କଥା ମନେ ପଡ଼ୁଥିଲା— ଏହାରି ଭିତରେ ଅନେକ ଫାଲ୍‌ଗୁନ ଆସିଛି—ଚତୁର୍ଦ୍ଦଶୀ ରାତ୍ରିର ବିପୁଳ ସମାବେଶ ଭିତରେ ଶଙ୍ଖ ଓ କୋଇଲିର ସଙ୍ଗମ ସ୍ଥଳ କୋଳାହଳମୁଖର ହୋଇ ଉଠିଛି । କିନ୍ତୁ ଗୃରୁଆ ଓ ବଣ୍ଟିଙ୍ଗର ସେହି ପ୍ରଥମ ପ୍ରଣୟ ଭଳି ଆଉ ଗୋଟିଏ ଅଧ୍ୟାୟ ଗୃରୁଆ ଓ ବଂର ଜୀବନ ଇତିହାସରେ ପୁନରାବୃତ୍ତି ହୋଇନି ।

ଗୃରୁଆ ଓ ବ୍ ବେକ ସଲଖାଇ ଆଗର ପୋଲ ପାଖରେ ଦି' ଫାଙ୍କିଆ କଦମ୍ବ ଗଛକୁ ଚାହିଁଲା । ସେ ଗଛ ମନେ ପକାଇଦେଲା ଗୃରୁଆ ଓ ବଂର ସରସ ସୁନ୍ଦର ଅତୀତ—ଅତୀତର ସେହି ବିମୁଗ୍ଧ ବିହ୍ୱଳ ସନ୍ଧ୍ୟା ଓ ଜୀବନର ସେହି ଜୁଆରିଆ ପ୍ରଣୟ କଥା । ବରିଙ୍ଗ ସଞ୍ଜବାଳ ହୋଇ ତର୍କଗିର ସାଥି ତରୁଣୀମାନଙ୍କ ସଙ୍ଗରେ ମେଳା ଦେଖିବାକୁ ଆସିଥାଏ—ଅସଂଖ୍ୟ ଆଦିବାସୀ ତରୁଣୀ ଭିତରୁ ଟର୍କଗିର ସେଦିନର କୁମାରୀ ବଣ୍ଟିଙ୍ଗ ବାଛି ହୋଇ

ଯାଉଥାଏ—ଗୃହୁଆ ଛନକା, ଆଖିରେ ବରଗଙ୍କୁ କଣେଇଁ ଗୃହୁଁଛି ।
ଭେଲି କକା ଗୃହୁଆର ମନରକଥା ଜାଣି ପାରିଲ ।

ଗୃହୁଆ ଓ ବଂ ପ୍ରାଣପ୍ରତିମ ସ୍ତ୍ରୀକୁ ହଜାଇ ଗୁଲବୀ ଓ ଦୁଲବୀକୁ ନେଇ ବାର ବର୍ଷ ଜଙ୍ଗଲରେ ଦିନ କାଟୁଥାଏ । ସିଏ ଯଦି କହୁଥିଲେ ବ ଦ୍ବିତୀୟ ଦାରଗ୍ରହଣ ସକାଶେ ରାଜି ହେଉ ନ ଥାଏ । ବାଧ କଲେ କହୁଥାଏ, ଗୋଟିଏ ଝିଅଟିରେ ପରି ଜଣକ ହାତକୁ କେତେ ମୁହାଣରେ ଧରି ରଖିଥିଲ । କିନ୍ତୁ 'ଉପରବାଲ' ସେତକ କରାଇ ଦେଲନି । ବୋଧହୁଏ ତାର ଇଚ୍ଛା ନୁହେଁ ଯେ ମୁଁ ଘର ସଂସାର କରେଁ । ନ ହେଲେ ଦୁଲବୀ ଓ ଗୁଲବୀକୁ ମା ଛେଉଣ୍ଡ କରି ସିଏ କଣ ଗୁଲି ଯାଇଥାନ୍ତା ? ଆଉ ଥରେ ତାର ସଂସାର ପ୍ରତି ଶ୍ରଦ୍ଧା ନାହିଁ । ଗୁଲବୀ ଦୁଲବୀକୁ ବାହାଘର କରିଦେଲେ ମୋର ଦାୟିତ୍ବ ସରିଲ । ଆଉଥରେ ବବାହକରି କାନ୍ଦଛଡ଼ା ପୁଆଳକୁ ପୁଣି ଥରେ କାନ୍ଧେଇବ କାହିଁକି ? ନିର୍ଜନ ଜୀବନ ଆରାମପ୍ରଦ । ଦୁଃଖ ନାହିଁ କି ଚିନ୍ତା ନାହିଁ । ଜୀବନଟି ଏମିତି ବୋହିଯାଉ ! ଆଉ କେଇଟା ଦିନ ଯେ ? ସୂର୍ଯ୍ୟ ଆସିଗଲା ମଥାନ ଉପରେ । ଟିକିଏ ତଳକୁ ଖସିଲେ ଛୁଟି । ତା ପରେ କିଏ ଅଛି ନା ଆଉ ରହିବ ?

କିନ୍ତୁ ସେଦିନର ଗୃହୁଆ ଓ ବଂ ବରଗଙ୍କୁ ଦେଖି ତରଳିଗଲ । କଦମ୍ବଗଛ ମୂଳେ ମୋହନର ଅସ୍ପଷ୍ଟ ବଂଶୀ ସ୍ୱନ ବାଜିଉଠିଲ । ପ୍ରେମ-ଯମୁନା ଉଚ୍ଛୁଳା ହେଲ । ସେ କୋଟିଏ ଯୁଗର ଉଲ୍ଲାସ ନେଇ ବରଗଙ୍କର ରୂପ ଯୌବନକୁ ଅନେଇ ରହିଲ !

ଭେଲି କକା ନୀରବ ଆନନ୍ଦରେ ପୁଲକିତ ହେଲା । କୋଉର ଚୁଅ ଏହି ଗୃହୁଆ । ଗାଲ ଚିପିଲେ ଦୁଧ ବାହାରିବ । କେମିତି ଅବେଳରେ ଦି'ଟା ଝିଅର ବାପା ହୋଇଛି ଯେନା । ନ ହେଲେ ସଂସାର ସୁଖ ଜାଣିଲା କଣ ? ଗୃହୁଆ ଏକୁଟିଆ ଗୁଲି ଗଲାବେଳେ କିଏ କହିବ ସେ ଦୁଇଟା ଝିଅର ବାପା ? ଯାହାହେଉ

ଏତେ ଦିନକେ ସଂସାର ମୁହାଁ ହୋଇଛୁ । ସୁବିଧା ଦେଖି ପ୍ରସ୍ତାବ ପକାଇଲେ ଭଲ ହେବ । ଦୁଇଜଣ ପକ୍ଷ ବୋଲି ଦୁଇଟା ଖାସି ଜାଗାରେ ଆଜ ଗୋଟିଏ ଅଧିକା ଲଗିପାରେ । ଦୁ'ଘଡ଼ା ଅଧିକା ମଦ ମାଗିବେ —କିନ୍ତୁ ସେଥିରେ ଯାଏ ଆସେ କେତେ । ଗୃହୁଆ ତ ଅସମର୍ଥ ପିଲା ନୁହେଁ ? ଏ ଝଣ୍ଡିକରେ କିଏ ଅଛି ଗୃହୁଆ ସଙ୍ଗେ ଛିଡ଼ାହେବ ? ଜମି, ହଳ, ଲଙ୍ଗଳ କାହିଁରେ ଊଣା ? ମିସନ ଲୋକ ସଙ୍ଗେ ମିଶି ଗୁଡ଼ାଏ ପାଠ ପଢ଼ିଛି—ଦୁନିଆର ବାରକଥା ମୁହେଁ ମୁହେଁ କହିଦିବ ? ଝିଅର ବାପା କଣ ମଙ୍ଗିବ ନାହିଁ ?

ହେଲା କକା ଗୃହୁଆ କାନ୍ଧରେ ହାତ ପକାଇ ଡାକିଲା— ଗୃହୁ !

ଗୃହୁଆ ଓଃ ନିଜକୁ ଭୁଲିଯାଇ ଥାଏ—ସେ ବଉଳିଙ୍କ ବିମୁଗ୍ଧ ମୁଖମଣ୍ଡଳକୁ ଅନାଇ ଅନାଇଁ ଅପୂର୍ବ ଆନନ୍ଦ ଆହରଣ କରୁଥାଏ । ଚମକିଲା ପରି ପଚାରିଲା - କିଏ ?

ମୁଁ ତୋର ହେଲା କକାରେ ଗୃହୁ ! ଏବର୍ଷ ମେଳାଟା ଖୁବ୍ ଭିଡ଼ରେ ଜମିଛି—ନୁହେଁ ?

ହଁ କକା ! ଏ ବର୍ଷର ମେଳାଟି ଖୁବ୍ ସୁନ୍ଦର ହୋଇଛି । ମୁଁ ଜାଣିଲା ଦିନୁ ଏମିତି ମେଳା ଦେଖି ନ ଥିଲି ।

ହଁରେ ରେ ଗୃହୁ ! ଏମେଳା କେତେ କେତେ ଅତି ସୁନ୍ଦର ଭାବରେ ଜମେ । ମୋର ଯେତେବେଳେ ସତର ବର୍ଷ, ଏ ମେଳାରେ ଭୀଷଣ ଭିଡ଼ ହୋଇଥିଲା । ଲୋକେ ପାଦ ପକାଇବାକୁ ଥାନ ପାଇଲେ ନାହିଁ । କେତେ ଛୁଆ ହାତ ଛୁଡ଼ି ବାଟ ଭୁଲିଲେ । ଗହଳ ଭାଙ୍ଗିଲା ଛଅ ଦିନ ପରେ । ଲୋକେ ବ୍ରାହ୍ମଣୀରେ ବୁଡ଼ ପକାଇ ଯେଝାଘରକୁ ଫେରିଗଲା ପରେ ମେଳା ଥାନରେ ଆଣ୍ଠୁଏ କହଳ ପଚର ଝାଳ ଜମାହୋଇ ଥାଏ । କାରବାର ବି ଭଲରକମ ହେଲା । ଆମର ସେ ବର୍ଷର ରୋଜଗାର ଦୁ'ବର୍ଷ ଯାଏ ଖାଇଲୁ ।

ଯେତକ ଯାକ ସପ ମହିଣା, ମନ୍ଦୁ ଅଣା ହୋଇଥିଲ ସବୁ ତତ୍ତ୍ୱା-ଦାମରେ ବନ୍ଦି ହେଲ—ଆଜ ଠିକ୍ ସେହ୍ନବର୍ଷ, ତୋର କାକାଙ୍କୁ ମୁଁ ଏହ୍ନ ବେଦବ୍ୟାସ ମେଳାରୁ ବାଛି ନେଇଥିଲ । ତୋର ସେଇତକ୍ ବେଳେ ଜନମ ନାହିଁ—ସେ ଅନେକ ଦିନ ତଳର କଥା ! ଭୋଳି କକା ସେହ୍ନ ସୁଦୂର ଅତୀତକୁ ସ୍ମରଣ କରୁଥିଲ ।

ମୁଁ ଦେଖିଛି ଭୋଳି କକା ! କାକା ମୋର ସୁନାର ମଣିଷଟିଏ । କେତେ ସ୍ନେହ, କେତେ ସୁହାଗ ତାର ! କଥା କହ୍ନ ମନ ଆଜ ମଣିଷ କଣିନାଏ ।

ଭୋଳି କକା ପ୍ରକୃତସ୍ଥ ହୋଇ କହିଲ, ବେଦବ୍ୟାସ ମେଳା ଯେଉଁ ବିବାହ ନିବନ୍ଧରେ ସାକ୍ଷୀ, ସେ ବିବାହ ସବୁବେଳେ ସାର୍ଥକ ହୁଏରେ ଗୃରୂଆ ! ସେଇଥିପାଇଁ ଆମ ଜାତିରେ ନିୟମ ଅଛି, ବରଷ‌ଙ୍କ ଥରେ ସବୁ ଅବିବାହିତା ଝିଅ ସୁନ୍ଦର ବେଶହୋଇ ବେଦବ୍ୟାସ ମେଳାକୁ ଆସନ୍ତି । ଅବିବାହିତା ପୁଅ ସଙ୍ଗରେ ମିଶିବାକୁ ତାଙ୍କୁ ପ୍ରଶୟ ଦିଆଯାଏ ! ଯିଏ ଯାହାର ମନକୁ ଦେନେ, ତାର ତାହାରି ସଙ୍ଗରେ ସମ୍ବନ୍ଧ ପଡେ । ବ୍ୟାସ ଋଷିଙ୍କର ଆଶୀର୍ବାଦରୁ ସେ ବିବାହ ସୁନ୍ଦର ହୁଏ, ସାର୍ଥକ ହୁଏ । ବ୍ୟାସପୀଠ ଏହ୍ନ ଶଙ୍ଖ କୋଇଲର ସଙ୍ଗମ ସ୍ଥାନ ଅତି ପବିତ୍ର ରେ ଗୃରୁଆ ! ଅତ୍ୟନ୍ତ ଶୁଭପ୍ରଦ ।

ଦୁହେଁ ନୀରବ ହେଲେ କିଛି ସମୟ ପାଇଁ ! ଭୋଳି କକା ସମ୍ବନ୍ଧ କଥା ପକାଇବାକୁ ସୁଯୋଗ ଖୋଜୁଥିଲ । ଠିକ୍ ଏହ୍ନ କହିଲ, ଆଚ୍ଛା ଗୃରୁ ! ଏଇନେ ତୋର ସମ୍ବନ୍ଧ ପକାଇଲେ କେମିତି ହୁଅନ୍ତା ?

ବାହା ସମ୍ବନ୍ଧ କକା ?

ହଁରେ ପୁଅ ! ସେହ୍ନ ବାହା ସାହାକଥା କହୁଥିଲି । ମେଳାକୁ ଯେତେବେଳେ ଆସିଛେ ଖାଲି ହାତରେ ଫେରିବା କାହିଁକି ?

ସେ କଥା ଆଉ କାହିଁକି କକା ?

ତୁ ଆଜ ନାହିଁ କରନାରେ ଗୃରୁ ! ଏକଲ ମଣିଷ ହିଁ ଝିଅଙ୍କୁ ନେଇ କେତିଠ ଚଳିବୁ ? କାମିକା ଲୋକ । ବଲକୁ ଓହ୍ଲାଇଲେ ସିନା ଖାଇବାକୁ ମିଳିବ—ଝିଅଙ୍କୁ ଜଗିବୁ ନାଁ କାମକୁ ଯିବୁ ?

ଗୃରୁଆ ବଡ଼ଏ କାଳ ନୀରବ ରହି ଏଣୁ ତେଣୁ ଗୁଡ଼ଏ ଭାବିବାକୁ ଲଗିଲା ।

ହଁରେ ପୁଅ ! ଭାବ ଦେଖେ ! ତୋର ଭୋଳ କକା ତୋତେ କିଛି ଖରାପ କଥା କହିବ ନାହିଁରେ ! ମୁଁ ଅପେକ୍ଷା କରିଛି ; ତୁ ମୋତେ ଜବାବ ଦେ ।

ଗୃରୁଆ ଭୋଳ କକାକୁ ଗୃହିଁଲା । ବୁଢ଼ା ଆଖିରେ ଆନନ୍ଦର ଢ଼ୁଛଢ଼ୁବ । ପିଲଟିବେଳୁ ଗୁଡରେ ବୋହି ମଣିଷ କରିଛି—ବାପ ମାଆ ଗୃଲଗଲେ ଦନୁ ପୁଅଭଳି ଯନ୍ନକରି ମଣିଷ କଲା । ଏ ଭୋଳ କକା ତାପାଇଁ ଦେବତାର ଆଶୀର୍ବାଦ ! ସିଏ ଖାଲିଶୁଭ କଥା କହେ ; ସୁନ୍ଦର କଥା କହେ ।

ଗୃରୁଆ ଓଟ୍ଟଂ ଓଠ ଚପି ଚପି କହିଲା, ତୁ ଯେତେବେଳେ କହୁଚୁ, ଅନ୍ୟଥା କରିବ କାହିଁକି ? କିନ୍ତୁ କନ୍ୟା କଣ ଠିକଣା ହୋଇଛି ?

ଭୋଳ କକା ତୋର ଭୁଲ କରିବ ନାହିଁରେ ଗୃରୁଆ ! ଅନାଇ ଗୃହିଁଲୁ, ଏଇ ଆଗର ହିଁ ଫାଙ୍କିଆ କଦମ୍ବ ଗଛ ତଳେ ସେଇ ଯେଉଁ ଉଜଳ ଡାଉଲ, ଛକ ସାଢ଼ୀ ପିନ୍ଧା ଝିଅଟା ନାହିଁ, ତାରି ପାଇଁ କଥା କରିବ । ଝିଅର ବାପ ମୋର ପିଲବେଳର ସାଙ୍ଗ ! ତର୍କସ୍ୱରେ ସିଏ ବ ଜଣେ ସମର୍ଥ ମଣିଷ ।

ସେ କଣ ରାଜିହେବ କକା ?

ରାଜି ହବନି ? ଭୋଳି କକାର ନିଜର କଥା ଉପରେ ଯଥେଷ୍ଟ ବିଶ୍ୱାସ ଅଛି । ତୁ ଖାଲି ରାଜି ହ ।'

ଗୁରୁଆ ଓଭ୍ରାଂ ଚାହୁଁଛି ଭୋଳି କକା ଯାଇ ବରଙ୍ଗିର ବାପ ସଙ୍ଗରେ କଥା କଲା । ବରଙ୍ଗିର ବାପକୁ ଭୋଳିକକା ଗୁରୁଆକୁ ହାତ ଲମ୍ବାଇ ଦେଖାଇ ଦେଲାବେଳେ ବରଙ୍ଗି ମଧ୍ୟ ଗୁରୁଆକୁ ଚାହିଁଲା । ଗୁରୁଆ ଓ ବରଙ୍ଗିର ଚାରି ଚକ୍ଷୁର ମିଳନ ହେଲା । ସେ ଚାହାଣୀରେ ଥିଲା ଅମୃତର ସ୍ୱାଦ । ଉଭୟେ ଉଭୟଙ୍କ ପ୍ରତି ଆକୃଷ୍ଟ ହେଲେ । ଉଭୟେ ଉଭୟଙ୍କର ପସନ୍ଦକୁ ଆସିଲେ । ମେଳା ପରେ ଛ'ଦିନକୁ ବାଜିଲା ଶୁଭ ମହୁରି । ବରଙ୍ଗି ଗୁରୁଆ ଘରର ଘରଣୀ ହେଲା । ବରଙ୍ଗି ନୈବେଦ୍ୟ ବାଢ଼ି ସ୍ୱାମୀ ଦେବତାର ଆରାଧନା କଲା । ସମସ୍ତ ସୁନ୍ଦର ଭାବରେ ଗଡ଼ି ଚାଲିଲା ।

ଦିନେ ଚଉଠି ଜହ୍ନର ତୋଫା କିରଣ ତଳେ ବରଙ୍ଗିକୁ ପାଖକୁ ଡାକି ତାର ମାଉଁସିଆ ମୁହଁର କଣ୍ଟାଚିବୁକ ଉପରେ ଆଙ୍ଗୁଠି ରଖି ଗୁରୁଆ ପଚାରିଲା, ତୁ ମୋତେ ଭଲ ପାଉ ବରଙ୍ଗି !

ବରଙ୍ଗି ହସିଲା । ଅତି ଫନ୍ଦାମକ ହସ ! ହସିଲା କଣ୍ଠରେ ଜବାବ ଦେଲା, ସନ୍ଦେହ ହେଉଛି ?

ସନ୍ଦେହ ନୁହେଁ ଯେ ......

ତେବେ ?

ଖାଲି ପଚାରି ଦେଲି ।

ବିନା କାରଣରେ ?

ତୁ ମୋର ଦ୍ୱିତୀୟପକ୍ଷ କି ନା ? ଲୋକେ କହନ୍ତି ଦ୍ୱିତୀୟ ସ୍ତ୍ରୀ ସବୁବେଳେ ଅସନ୍ତୋଷ ଥାଏ । ତା'ପରେ ଏ ଛୁଆପିଲାର ଜଞ୍ଜାଳ । ତୁ ମୋ ଉପରେ ପୁଣି ରାଗି ଯାଉଥିବୁ—ନୁହେଲେ ?

ରାଗିବାର ତ କାରଣ ନାହିଁ ଗୁରୁଆ ! ସ୍ତ୍ରୀ ବର ପାଖରେ ଆଉ ଗୋଟିଏ ସ୍ତ୍ରୀର ଉପସ୍ଥିତିକୁ ସହିପାରେ ନାହିଁ । କିନ୍ତୁ ମୋର

ତ ଯନ୍ତ୍ରଣା ନାହିଁ ଯେ କଳି କରିବ । ଝୁଅପିଲାଙ୍କୁ ଦେଖିଲେ ଗେଲ କରିବାକୁ ମନ ଡାକେ—ସେମାନେ ଖାଲି ଝିଅ ତ ନୁହନ୍ତି, ସ୍ୱୟଂ ମା ଦୁର୍ଗା ! ପୁଣି ଚୋରିଭଳି ମରଦ···ବଣିଙ୍ଗି ଅଟକି ଗଲା ।

ଅଟକି ଗଲୁ ଯେ ବଣିଙ୍ଗି ! ଫିଟାଇ କହୁନୁ—

ଚୋରିଭଳି ମରଦ ଥିଲେ ସ୍ତ୍ରୀ ବେଳକରିବା କଥା ।

ସତେନା ?

ବଣିଙ୍ଗି ଗୁରୁଆର ରକ୍ତ ଲୋହିତ ମୁହଁର ପରିବର୍ତ୍ତନଶୀଳ ଭଙ୍ଗିମାକୁ ଉପଭୋଗ କରୁ କରୁ କହିଲା—

ସତେରେ ଗୁରୁଆ ! ତୋତେ ଦେଖିଲେ ପୂଜା କରିବାକୁ ମନ ଡାକେ—ମନେହୁଏ ତୁ ମୋର ଅନେକ ଜନ୍ମର ତପସ୍ୟାର ଫଳ ।

ମିଛୁ ।

ମିଛୁ କହିବି ପୁଣି ତୋର ଆଗରେ ଗୁରୁଆ ! ତୋର ମୋର ଉପରେ ପୁଣି ଏତେ ଅବିଶ୍ୱାସ ?

ବଣିଙ୍ଗି ଅଭିମାନ କଲା । ଆଖି ମଳି କାନ୍ଦିଲା । ସେ ଅଭିମାନ ଭାଙ୍ଗିଲା ଦୁଇ ହାନପଟରେ, ଘେଲ କକାର ମଧ୍ୟସ୍ଥତାରେ । ଘେଲ କକା ଶୁଣିଲା ଯେମିତି ଦି'ଜଣଙ୍କୁ ଏକାଠି କରି କହିଲା, ଯେଉଁ ସେତୁବନ୍ଧକୁ ଏତେ ଶରଧାରେ, ଏତେ ସରାଗରେ ବାନ୍ଧୁଛ, ତାକୁ ତମେ କଥା କଥାରେ ଭାଙ୍ଗି ଦେବାକୁ ଭାବ ପାରିଲ— ନୁହେଁ ? ଦି'ଜଣଙ୍କର କାନ୍ଧଯୋଡ଼ି ସେ ଶପଥ କରାଇ କହିଲା, ଏ ବୁଢ଼ା ଘେଲ କକାର ହାତ ଉପରେ ହାତ ରଖି ଆଜି ଜବାବ ଦେଲ, ଦହେଁ କେବେ ହେଲେ କଳିକରି ଘର ଭାଙ୍ଗିବନି ।

ବଣିଙ୍ଗି ଓ ଗୁରୁଆ ଉଭୟେ ଉଭୟଙ୍କର ମୁହଁକୁ ଦେଖି ଘେଲ କକା ଆଗରେ ଟୁପ୍ ଟୁପ୍ ହସିଲେ ଆଉ ଶପଥ ନେଲେ । ଘେଲ କକା ଧରମ ଦେବତାଙ୍କୁ ହାତ ଯୋଡ଼ି ନମସ୍କାର ହେଲା;

ଆଜି କହିଲା, କାଲି ଲାଗିଲେ ଯୋଉ କଥାକୁ ମନେ ପକାଇ ସବୁ ଭୁଲି ଯିବରେ ଝିଲେ !

ସେଦିନୁ ତାଙ୍କର ଗ୍ରେଷ୍ଟିଆ ସଂସାରରେ ଭଲ ବୁଝାମଣା ହୋଇଗଲା । ଅନେକ ଦିନ, ଅନେକ ସୁଖ ଦୁଃଖ ଭିତରେ ଉଠି ପଡ଼ି ସେମାନେ ଚାଲିଲେ । ଦୁଃଖକୁ ସର୍ବସହାଂ ହୋଇ ଗ୍ରହଣ କଲେ ଆଉ ସୁଖକୁ ଆଗ୍ରହରେ ଉପଭୋଗ କଲେ । ସୁଖ ଓ ଦୁଃଖ ଉଭୟ ଜିନିଷକୁ ଗୃହସ୍ଥି ହାତ ବଢ଼ାଇ ବାଣ୍ଟି ନେଲେ । ଗୁଲବୀ ଓ ଦୁଲଶୀ ଖ୍ରୀଷ୍ଟିଆନ୍ ମିସିନାରୀର ଆନୁକୂଲ୍ୟରେ ପରିଚାଳିତ ହେଉଥିବା ସ୍କୁଲରେ ନାଁ ଲେଖାଇ ପଢ଼ିବାକୁ ଲାଗିଲେ । ଦୁଲଶୀର ମନ ତୀକ୍ଷ୍ଣ—ସେ ଗୁଲବୀଠାରୁ ବୟସରେ ଛୋଟ ହେଲେ ବି ଇସ୍କୁଲରେ ଆଗେଇ ଗଲା । ସବୁପାଠ ତାର ମନେ ରହିଲା ଓ ସବୁ ପରିସ୍ଥିତି ଭିତରେ ନିଜକୁ ମିଶାଇ ନେଲା । କିନ୍ତୁ ଗୁଲବୀ ସବୁବେଳେ ଘରମୁହାଁ ହେଲା । ଘର ଚଳାଇବାକୁ ସାବତ ମାଁକୁ ସାହାଯ୍ୟ କଲା । ଦୁଲଶୀ ବୃତ୍ତିପରୀକ୍ଷାରେ ପ୍ରଥମ ହୋଇ ବଡ଼ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲାବେଳେ ଗୁଲବୀ ବୃତ୍ତିପରୀକ୍ଷାରେ ଫେଲ୍-ହୋଇ ଘରେ ବସିଲା । କୌଣସି ପ୍ରକାରେ ଗୁହ୍ନଆ ଓ ବଶଙ୍ଗିର ସୁନ୍ଦର ସଂସାର ଆଗେଇ ଚାଲିଲା ।

କିନ୍ତୁ ଦିନେ ସେ ସଂସାରରେ ଅଦିନିଆ ଝଡ଼ର ଆବିର୍ଭାବ ହେଲା । ମିସନ୍ ଶିକ୍ଷକ ସାମୁଏଲ୍ ସାହୁ ଯେଉଁଦିନ ଖବର ଆଣିଲେ ଯେ ବିରାଟ ଲୌହକାରଖାନା ନିର୍ମାଣ ପାଇଁ ଅସଂଖ୍ୟ ଗ୍ରାମର ଆବାଳବୃଦ୍ଧବନିତାଙ୍କୁ ବାସଚ୍ୟୁତ ହେବାକୁ ପଡ଼ିବ, ସେଦିନ ସୁନ୍ଦରଗଡ଼ ଜିଲ୍ଲାର ସେହି ଅଜ୍ଞାତ, ଅଖ୍ୟାତ ବଣ ଅଞ୍ଚଳରେ ଗୋଟାଏ ଆତଙ୍କର ଝଡ଼ ବୋହିଗଲା । ଅନାଗତ ଭବିଷ୍ୟତର ଅଶୁଭ ଆଶଙ୍କାରେ ସମସ୍ତେ ମ୍ରିୟମାଣ ଦେଖିବାକୁ ଲାଗିଲେ । ଗ୍ରାମେ ଗ୍ରାମେ ଏହାର ପ୍ରତିବାଦ ଜଣାଇବାକୁ ସଭା ଶୋଭାଯାତ୍ରା ଚାଲିଲା ।

ରାଜ୍ୟର ବିରୋଧୀ ରାଜନୈତିକଦଳ ସମସ୍ତର ସୁଯୋଗ ନେଇ ପ୍ରତ୍ୟର କାମରେ ହାତଦେଲେ । ଅନେକ ଆଦିବାସୀ ଓ ଅଣ-ଆଦିବାସୀ ଲୋକ ବିରୋଧୀ ସଂଗ୍ରାମର ସ୍ୱେଚ୍ଛାସେବକ ହେଲେ । ଗୁରୁଆ ଓରାଂ ସେଦିନ ସାମୁଏଲ୍ ସାହୁଙ୍କ ପ୍ରରୋଚନାରେ ପଡ଼ି ବିରୋଧ ସଂଗ୍ରାମକୁ ଗୋଡ଼ ବଢ଼ାଇଲା ।

ଏତିକି ସବୁ ପନ୍ଦରଦିନ ପରେ ପୋଲିସ ବାହିନୀ ଆସି ଯେତେବେଳେ ଘୋଷଣା କଲେ ଯେ ସମସ୍ତେ ଅତିଶୀଘ୍ର ଘରଗୁଡ଼ ଖାଲିକରିବ, ଏହାଶୁଣି ପ୍ରତିକ୍ରିୟାଦଳ ପରୋକ୍ଷ ସଂଗ୍ରାମର ମସୁଧା କରିବାକୁ ଲଗିଲେ । ପୋଲିସ ସଙ୍ଗେ ଗାଁବାଲଙ୍କ ସଂଘର୍ଷ ହେଲା । ଗୁରୁଆ ଓରାଂର ନାଁ ପୋଲିସ ଖାତାରେ ବସିଲା ।

ବିରଙ୍ଗି ଓ ଶୋଭା ଜଙ୍ଗା ଗୁରୁଆ ଓରାଂକୁ ଅନେକ ବୁଝାଇଲେ । ଗୁରୁଆ ଓରାଂ ବୁଝିଲା ନାହିଁ । ବିପ୍ଳବ ନିଶା ଏପରି ଚଢ଼ିଥିଲା ଯେ ବିରଙ୍ଗିର ଲୁହ ଢଳ ଢଳ ଆଖି ଶୋଭା ଜଙ୍ଗାର ତାଗିଦ ଓ ସ୍ନେହସିକ୍ତ ଉପଦେଶ ସେହି ନିଶା ଆଗରେ ହାର ମାନିଲେ । ଗୁରୁଆ ଓରାଂ ଘରକାମରେ ଆଉ ମନ ଦେଲନାହିଁ । ବିରଙ୍ଗି ଦୁଃଖେ କଷ୍ଟେ ତାର ସମର୍ଥ ମୁତାବକ ସବୁକାମ ନିଜ ହାତକୁ ନେବାକୁ ବାଧ୍ୟହେଲା ।

ଦିନେ ବୋଟିଏ ଅଶୁଭ ସକାଳରେ ଖବର ପହଞ୍ଚିଲା ଯେ ଗୁରୁଆ ଓରାଂ ଭୟାନକ ବିପ୍ଳବରେ ସହଯୋଗ କରି ସରକାରଙ୍କ ଆଦେଶ ଅମାନ୍ୟ କରିଥିବାରୁ ଓ କରିବାକୁ ପ୍ରରୋଚନା ଦେଉ-ଥିବାରୁ ଅଟକ ଆଇନ ବଳରେ ବନ୍ଧାଯିବ ।

ବିରଙ୍ଗି ଅନେକ କାନ୍ଦିଲା—

ବିରଙ୍ଗି କାହାରେ ସହାନୁଭୂତି ଦେଖାଇବାକୁ ଶୋଭା ଜଙ୍ଗା ଆଉ ଜୀବନରେ ନଥିଲା ।

ଗୃହୁଆ ଓ୍ବାଂ ସେ ଆଦେଶ ପାଇ ବସ୍ମିତ ହେଲନାହିଁ—କିନ୍ତୁ ତାକୁ ଅଧିକ ବସ୍ମୟ ଲ ଯେତେବେଳେ ଅପରାଧୀ ତାଲିକାରେ ସନ୍ଦିଗ୍ଧଭାବେ ସମ୍ପୃକ୍ତ, ସଙ୍ଘ ଓ ବରୋଧର କେତେ-ଜଣ ପ୍ରତାପୀ ନେତାଙ୍କର ନାଁ ବାହାରିଲ ନାହିଁ । ତଥାପି ସେ ସନ୍ତୁଷ୍ଟ ହେଲ ଯେ ସେ ଅନ୍ୟାୟ ଓ ଅସତ୍ୟର ପ୍ରତବୋଧ କରିଛି । ଘରସଂସାରକୁ ବାଜରଖି ପୋଲିସ ଅତ୍ୟାଚୃରକୁ ପଦା'ରେ ପକାଇଛି । ନିର୍ମମ ଓ ଅମଣିଷ ପୋଲିସ୍ କର୍ମଚାରୀଙ୍କୁ ଅନେକ ଶିକ୍ଷା ଦେଇଛି ।

କିନ୍ତୁ ବରଙ୍ଗିର ବଦାୟକାଳୀନ କ୍ରନ୍ଦନ ତାକୁ ମୂକ ଓ ଅଥର୍ବ କରିଦେଲ । ଗୁଲବୀ ଓ ଦୁଲବୀର ଅସହାୟ ଅଶ୍ରୁ ତାକୁ ପାଷାଣ କରିଦେଲ— ସେ ଅତୀତପାଇଁ ଅନୁତାପ କରୁଥିଲ କି ଜେଲଦଣ୍ଡ ପାଇଁ ଅଭିଯୋଗ କରୁଥିଲ—ତାର ମୁହଁର ଗୃହଁାଣୀରୁ ସେତକ ଜାଣିହେଲ ନାହିଁ ।

ଗୃହୁଆ ଓ୍ବାଂ ସାଇରନ୍ ଶବ୍ଦରେ ଚମକି ଉଠି ଗୃହିଁଲ ରାଜରଜେଲ ପାଦଖଇ ଆସୁଛି ।। ଆଲୋକର ଅରଣ୍ୟ ଭିତରେ କଳାଅନ୍ଧାର ପଶି ପାରୁନି ।

ଦୁଲବୀ ବନ ନାହାକ ସଙ୍ଗେ ଅନେକ ବୁଲିଲ— ଟାକ୍ସି ଭିତରେ ବସି ବଖ୍ୟାତ ବନ ନାହାକକୁ ସେ ଆଦେଶ ଦେଇ ପାରୁଥିଲ । ବନ ନାହାକ ଦରମାଖିଆ ଗୃକର ଭଳି ଦୁଲବୀର ସମସ୍ତ ନିର୍ଦ୍ଦେଶକୁ ପାଳନ କରୁଥାଏ—ମନରେ ତାର ଅନେକ ଆନନ୍ଦ, ଅନେକ ଉଲ୍ଲାସ । ଆଦେଶ ଦେବାରେ ମୃରବୀ ପଣିଆରୁ

ନିଷ୍ପ୍ରୟୋଜନ ହୋଇପାରେ ସତ, କିନ୍ତୁ ଆଦେଶ ପାଳନ କରିବାରେ କର୍ତ୍ତବ୍ୟ ପରାୟଣତାର ମାଧୁର୍ଯ୍ୟ ଅଛି । ବନ ନାହାକ ଜାଣିବା ଦିନଠାରୁ ଅନୁଚରମାନଙ୍କୁ ଆଦେଶ ଦେଇ ଆସୁଥିଲା—ଆଜି ଜୀବନରେ ପ୍ରଥମ ଥର ଆଦେଶ ପାଳନ କରୁଛି । ଦୁଲାରୀ ଭଳି ନବଯୁବତୀର ପ୍ରଗଲ୍‌ଭତା ଭିତରେ ସେ ବୃଦ୍ଧ ହୋଇ ଗଲେଣି । ଆଜିପର୍ଯ୍ୟନ୍ତ ପରକୁ କନ୍ଦାଇ ଆସିଥିଲା କିନ୍ତୁ ଆଜି ପରମୁହଁରେ ହସ ଦେଖିବାକୁ ଅଧୀର ହୋଇ ଯାଉଛି । ବନ ନାହାକ ସତେ ଯେମିତି ନୂତନ ଜନ୍ମ ନେଉଛି ।

ଅନୁଚର ଡ୍ରାଇଭର ଏ ରହସ୍ୟରେ ବିସ୍ମିତ ହୋଇ ଯାଇ-ଥିଲେ ମଧ୍ୟ ମୁନିବଙ୍କର ବ୍ୟବହାର ଉପରେ ଟିପ୍ପଣୀ ଦେବାର ସାହସ କରିପାରୁ ନାହିଁ । ହୁଏତ ବନ ନାହାକ ନୂତନ ଉପାର୍ଜନର ପନ୍ଥ ଖୋଜୁଛି । ଦୁଲାରୀକୁ ଖୁସି କରି ଆଉ କାହାର ସର୍ବନାଶର ପନ୍ଥ ଖୋଜୁଛି ।

ବନ ନାହାକ ଦୁଲାରୀର ରୂପଯୌବନ ଦେଖି ପ୍ରଥମ କରି ଅନୁଭବ କରୁଛି ଦୁନିଆରେ ତରୁଣୀର ହସ ଓ ଉଲ୍ଲାସହିଁ ସବୁଠୁ ମୂଲ୍ୟବାନ । ସୁରା ମନକୁ ମାତାଲ କରି ଶରୀର କ୍ଲାନ୍ତ କରେ— କିନ୍ତୁ ତରୁଣୀ ମନକୁ ଟାଣିରଖି ପ୍ରାଣ ଭିତରେ ଅମୃତର ସ୍ୱାଦ ଭରିଦିଏ । ଗୋଟିଏ ଉତ୍ତେଜନାର ଭେଳା ହେଲେ ଅନ୍ୟଟି ଉଦ୍ଦୀପନାର ଆଧାର ।

ଦୁଲାରୀ ଜଙ୍ଗଲ ଭିତରେ ବସି ନିଜକୁ ଓ ନିଜର ଅତୀତକୁ ବିଶ୍ଳେଷଣ କରୁଥାଏ । ଅନୁତାପରେ ଭରି ଉଠୁଥାଏ ତାର କଅଁଳ ମନ । ପିଲାଥିଲାବେଳେ ମିସିନାରୀ ସ୍କୁଲ ତାର ଏକମାତ୍ର ଆକର୍ଷଣ ଥିଲା । ଚାରିକାନ୍ଥ ଭିତରେ ପଶି ସେ ନିଜର ସମସ୍ତ ଅଭାବ, ଅସୁବିଧା ଭୁଲି ଯାଉଥିଲା । ଦୁଷ୍ଟ ହେବାରେ ଶ୍ରେଷ୍ଠ ଥିଲେ ମଧ୍ୟ ସ୍କୁଲ ପାଠରେ ଥିଲା ଅତ୍ୟନ୍ତ ପ୍ରବୀଣା । ତେଣୁ

ଶିକ୍ଷକଙ୍କଠାରୁ ଆରମ୍ଭ କରି ଶ୍ରେଣୀର ସଙ୍ଗୀ ସମ୍ପର୍କ ସାଥି ଗୁଣଗ୍ରାହୀଙ୍କର ଆଦରଣୀୟା ଥିଲା । କେତେ ସୁନ୍ଦର ସେ ଦିନର ସରସ ସ୍ମୃତି ! ଅମୃତ ଖୋଇ ଚାଲିଗଲା । ଆଃ, ସେ ଯଦି ସେହି ସୁନ୍ଦର ଅତୀତକୁ ଫେରି ଯାଇ ପାରନ୍ତା !

କିନ୍ତୁ ଅତୀତ ବୋଧହୁ ଯାଏ—ମନେ ପକାଇଲେ ଫେରି ଆସେ ନାହିଁ—ଅତୀତ ଚାଲିଯିବା ସଙ୍ଗେ ସଙ୍ଗେ ତାର ସଙ୍ଗରେ ଭସାଇ ନେଇଯାଏ ଅନେକ ସ୍ମୃତିର ସ୍ୱାଦ, ଅନେକ ଘଟଣାର ବୈଚିତ୍ର୍ୟ ! ସେ ଅତୀତର ଆନନ୍ଦ ବେଳେ ବେଳେ ମନେପଡ଼େ ପାହାନ୍ତା ପ୍ରହରର ସୁସ୍ୱପ୍ନ ପରି । ଆଖିବୁଜିଥିଲେ ଆନନ୍ଦ ଲାଗେ—ଆଖି ଖୋଲି ଚାହିଁଲେ ଲଜ୍ଜକୁଳି ଲତା ଭଳି ଝାଉଁଳି ଯାଏ ସେ ସ୍ୱପ୍ନ !

ଦୁଲାରୀର ଚକିତ ଚକ୍ଷୁରେ ଚମକ ବାଡ଼ି ସେହି ଅତୀତର ସ୍ୱପ୍ନ ଚାଲିଗଲା । ଦୁଲାରୀ ଦେଖିଲା ବର୍ତ୍ତମାନର ନଷ୍ଟ ପରିସ୍ଥିତି ଭିତରେ ଛିଣ୍ଡା ହୋଇଛି ମାନ ସମ୍ମାନହୀନା ରବର କଣ୍ଢେଇଟିଏ ! କଣ୍ଢେଇ ଦେହରେ ଚୂଆମିଶା ହଳଦୀର ରଙ୍ଗ ଟିକିଏ ଲାଗିଛି ବୋଲି ପ୍ରଲୁବ୍ଧ ଦର୍ଶକ କେଇଜଣ ବିସ୍ଫାରିତ ଆଖିରେ ଅନାଇଛନ୍ତି । ଆଖିରେ ତାଙ୍କର ଦର୍ଶନ ଲାଳସାଠାରୁ ସ୍ପର୍ଶ ଅଭିଳାଷ ଅତ୍ୟନ୍ତ ସ୍ପଷ୍ଟ । ସମସ୍ତେ ହାତ ବଢ଼ାଇ କଣ୍ଢେଇଟିକୁ ନିଜ ପାଖକୁ ଭିଡ଼ିନେବାକୁ ଉଦ୍‌ଗ୍ରୀବ—ଯିଏ ପାଖରେ ପାଇଲା ସେ ଟିକିଏ ଖୁସି ହୋଇ ଏପାଖ ସେପାଖ କରି ପରଖି ଦେଉଛି । ଆଗ୍ରହ କମିଗଲେ ପୁଣିଥରେ ଫୋପାଡ଼ି ଦେଉଛି । ତରୁଣ ଲଏଡ୍ ଭଳି ଅନେକ ଚଞ୍ଚଳ ଯୁବକର ଭିଡ଼ ସେଇଠି । ରବର କଣ୍ଢେଇ ଦେହରୁ ସୌଖିନ ରଙ୍ଗ ସରି ସରି ଆସିଲାବେଳେ ସେ ନିତାନ୍ତ ଅସହାୟ ଭାବରେ କ୍ରନ୍ଦନ କରୁଛି ।

ଦୁଲଣୀ ଆଖିରୁ ଯନ୍ତ୍ରଣାର ଲୁହ ଦୁଇଧାର ଗଡ଼ିଆସିଲ । ଝର୍ଦ୍ଧାର ବନ ନାହାକଙ୍କୁ ଲୁଗୁଇ ଲୁଗୁଇ ତାର ପଣତରେ ସେତକ ପୋଛି ଦେଲ । ବଣଜଙ୍ଗଲ ଯେଉଁ ନିର୍ଜନ ରାଉରକେଲର ସରଳମତି ଦୁଲଣୀ ସତେ ଯେମିତି ନାଇଲନ୍ ପିନ୍ଧା ଦୁଲଣୀର ଆତ୍ମା ଭିତରେ ପଶି ଆର୍ତ୍ତନାଦ କରୁଥିଲ ।

ଦୁଲଣୀ ଭାବିବାକୁ ଲଗିଲ—ଏହି ଜଳ ଜମିନ ଯେଉଁ ରାଉରକେଲା ତାକୁ ନାଇଲନ୍‌ଶାଢ଼ୀ ଦେଇଛି, ଫୁଲ୍‌ପକା ସାୟା ଓ ହାଇଠ୍ ପିଠ୍ ବ୍ଲାଉଜ ଦେଇଛି । ଆଖିରେ ଦେଇଛି ଅନେକ ଅସାର ସ୍ୱପ୍ନର ଭେଳା, କାନରେ ଶୁଣାଇଛି ଅନେକ ଅଶ୍ଳୀଳତା ପୂର୍ଣ୍ଣ ଚୁପ୍ ଚୁପ୍ ଗୁପ୍ତ କଥା—କିନ୍ତୁ ନେଇନି, ସରଳ ମଣିଷର ମନ, ନବ ଯୁବତୀର ଲଜ୍ଜାନତ ପ୍ରାଣ ! ରାଉରକେଲର ନୀଳ, ସବୁଜ ଆଲୁଅ ମାଳା ରାସ୍ତା ଘାଟକୁ ସୁନ୍ଦର କରିଛି, 'ଲୀଲ' ସିନେମା ହଲକୁ ସରସ କରିଛି—ଆମ୍‌ବାଗାନ୍‌କୁ ମଧୁର କରିଛି କିନ୍ତୁ ତାକୁ ଉପଭୋଗ କରୁଥିବା ଆଜିର ରାଉଲକେଲର ତଥାକଥିତ ସଭ୍ୟ, ସୁରୁଚିପୂର୍ଣ୍ଣ ଶିକ୍ଷିତ ନରନାରୀଙ୍କ ଦେହ ଭିତରର ମନକୁ ଆଲୋକିତ କରି ତହିଁରେ ଲୀଲ ସିନେମା ଓ ଆମ୍‌ବାଗାନ୍‌ର ମାଧୁର୍ଯ୍ୟ ଭରି ଦେଇନାହିଁ । ରଙ୍ଗୀନ ଆଲୁଅ ତଳେ ଛିଡ଼ା ହୋଇ ମଣିଷର ମନ ରଙ୍ଗୀନ ହୋଇ ଯାଇଛି । ତହିଁରେ ନାରୀଭରଣ ସୌନ୍ଦର୍ଯ୍ୟର ସ୍ପର୍ଶ ନାହିଁ କି ଖୋଲ ପ୍ରାଣର ପୁଲକ ନାହିଁ ।

ଟାକ୍ସି ଧିମେଇ ଧିମେଇ ଚାଲୁଥାଏ—କିନ୍ତୁ ଦୁଲଣୀର ମନ ବିଜୁଳି ଗତିରେ ଅତୀତ ଓ ବର୍ତ୍ତମାନ ଭିତରେ ଧାଁଧପଡ଼ କରୁଥାଏ । ଟାକସି ଯେତେବେଳେ ପାନପୋଷ୍‌ର ଦୋମୁହାଁ ଛକର ଗୋଲକାର ସିମେଣ୍ଟ ମଣ୍ଡପ ପାଖରେ ପହଞ୍ଚିଲ, ବନ ନାହାକର ଇଙ୍ଗିତପାଇ ଡ୍ରାଇଭର ଗାଡ଼ିରେ ବ୍ରେକ୍ ଦେଲ । ନିର୍ଜନ ନିକାଞ୍ଚନ ମଣ୍ଡପ ଉପରେ ଗୋଲେଇ ଜହ୍ନର ଗୋଳଆ

କାରଣ ବର୍ଦ୍ଧିଷ୍ଣୁ ହୋଇଥାଏ । ପାନ୍‌ପୋଷ ସନ୍ନିକଟ ଓରାଂ ଟୋଲିରୁ ମାଦଳ ବାଦ୍ୟ ଭାସି ଆସୁଥାଏ । ଆଦିବାସୀ ଯୁବକ ଯୁବତୀ ଶନିବାରିଆ ସନ୍ଧ୍ୟାକୁ ଉପଭୋଗ କରୁଥିବେ ବୋଧହୁଏ ! ସକାଳ ପାହିଲେ ରବିବାରିଆ ଛୁଟି । ଏଣେ ରାଉରକେଲାର ପ୍ଲାଣ୍ଟ ଏରିଆ ଭିତରୁ ବ୍ଲାଷ୍ଟଫରନେସ୍‌ର ସଙ୍ଗୀତ ଶୁଭୁଛି । ବିପରୀତ ଦିଗରୁ ବହି ଆସୁଥିବା ଦୁଇଟି ଶବ୍ଦ, ଦୁଇଟି ସଙ୍ଗୀତରେ ପରସ୍ପର ବିରୋଧୀ ଭାବର ସମାବେଶ । ଗୋଟିକରେ ଅଛି ପ୍ରାଣର ଫୁଆରା — ଅନ୍ୟଟିରେ ଅଛି ଆଳସ୍ୟର ଦେଳା । ଗୋଟିଏ ଜୀବନକୁ ସରସ କରେ, ମଧୁର କରେ — ଅନ୍ୟଟି କ୍ଳାନ୍ତି ଦିଏ, ଅବସାଦ ଆଣେ ! ଦୁଲାରୀ ସ୍ଥିର କଲା ଓରାଂଟୋଲାର ସଙ୍ଗୀତ ହର୍ଷ ଉଚ୍ଛଳ ଅତୀତର, ଆଉ ବ୍ଲାଷ୍ଟଫରନେସ୍‌ର ସଙ୍ଗୀତ ଜୀବନ ହୀନ ରାଉରକେଲାର ।

ବରସୁଆ ଦିଗକୁ ମାଡ଼ିଯାଇଥିବା ରେଲଲାଇନର କଡ଼େ କଡ଼େ ଖୋଲା ପବନ ବହୁଥିଲା — ବନ ନାହାକ ମଉଳ ହୋଇ ଦୁଲାରୀ ସୁନ୍ଦର ମୁହଁକୁ ଛୁଇଁ ଛୁଇଁ ଶୀତଳ ପବନ ଉପଭୋଗ କରୁଥିଲା ।

ଦୁଲାରୀ ମନ ଭିତରେ ଗୋଟାକ ପରେ ଗୋଟାଏ ଝଡ଼ର ଢେଉ ମାଡ଼ି ଆସୁଥାଏ । ସେ ଭାବି ଭାବି ନିର୍ଣ୍ଣୟ କଲା ତାର ଏହି ଅଧୋଗତି ପାଇଁ ସେ ନିଜେ କେବଳ ଦାୟୀ । ଦୁଷ୍ଟ ପରିବାରର ସନ୍ତାନ ସିଏ, ବାପ ତାର ଜେଲ ଭୋଗୀ — ନିଜକୁ ଧରି ସମ୍ଭାଳି ଚାଲିଥିଲେ ହୁଏତ ବର୍ତ୍ତମାନ ତାକୁ ଅନୁତାପ କରିବାକୁ ପଡ଼ି ନଥାନ୍ତା । ରାଉରକେଲାର ନୂଆ ରଙ୍ଗ ଆଉ ପାଞ୍ଚଜଣଙ୍କ ଭଲ ତା ଆଗରେ ଭେଲିକି ଦେଖାଇଲା । ଅନ୍ୟାନ୍ୟମାନେ ବୁଝିଲେ ଭେଲିକି ଖାଲି ଭୁଲର ପ୍ରତିଛବି । କିନ୍ତୁ ସେ ତାକୁ ସତ ମଣି ପଛରେ ଗୋଡ଼ାଇଲା ! ଫଳରେ ପଥ ପାର୍ଶ୍ୱରେ ପାଇଛି ଅନେକ ଆସାର ରଙ୍ଗ — ଗୋଟିଏ ବି ସ୍ଥାୟୀ ନହେଁ । ଗୋଟିଏ ଭୁଲ ପଛରେ

ଗୋଡ଼ାଇ ସହସ୍ର ଭୁଲର ଶୀକାର ହେଲା । କିନ୍ତୁ ଅନେକ ଦିନପରେ ଅନେକ ବର୍ତ୍ତୃଷ୍ଟା ପଛରେ ଦେଖିଲା ଲଣ୍ଡନ୍ ଭଳି ଗୋଟିଏ ବିରାଟ ପ୍ରଶ୍ନବୋଧକ ଖାଲ । ସେ ଖାଲକୁ ଡେଇଁ ଯିବାକୁ କେହି ନାହିଁ—କି ସେ ପ୍ରଶ୍ନର ସମାଧାନ କରିବାକୁ ସାହସ ନାହିଁ ।

ଭୁଲଟା ଭଲରେ ଅଛି । ଏକା ରକ୍ତ ବାଣ୍ଟି ଦୁଇଭାଗ ହୋଇଥିବା ଆଉ ଭଉଣୀ ସଙ୍ଗରେ ତାର ତୁଳନା ହୋଇ ପାରେନା । ପାଠ ନ ପଢ଼ି ସେ ସୁନାମ ଅର୍ଜନ କଲା, କିନ୍ତୁ ପାଠପଢ଼ି ଏ ଖାଲି ଦୁର୍ନାମ ଅର୍ଜନ କରିଛି । ମନେ ହେଉଥିଲା ସେ ଅନେକ ଆଗେଇ ଯାଇଛି—କିନ୍ତୁ ଆଜି ନିଜକୁ ନିଜେ ପର୍ଯ୍ୟବେକ୍ଷଣ କରି ବୁଝିଲା—ସେ ଅନେକ ପଛରେ । ବଙ୍କପୁର ଝିଅ ପରିବର୍ତ୍ତେ ପରିଙ୍କପୁର ଗ୍ଲାନିହିଁ ତାର ସାଥି ।

ସାମୁଏଲ୍ ସାହୁ କଥା ମନେ ପକାଇ ସେ ଉତ୍ତ୍ୟକ୍ତ ହେବାକୁ ଲାଗିଲା । ସିଏ ଯଦି ମିସିନାରୀ ସ୍କୁଲରେ ତାକୁ ସାହାଯ୍ୟ କରି ନଥାନ୍ତେ, ମିସିନାରୀ କର୍ତ୍ତୃପକ୍ଷଙ୍କର ସହାନୁଭୂତି ହୁଏତ ମିଳି ନଥାନ୍ତା । ତାଙ୍କର ପରାମର୍ଶରେ ସେ ଜର୍ମାନ୍ ଘରେ ଗୃହକର୍ମ ପାଇଲା—ଆଉ ଏହି ଗୃହକର୍ମହିଁ ହେଲା ତାର ବିନାଶର ମୂଳ । କାରଣ ମୋଟା ଟଙ୍କା ପାଇ ଅନେକ ପୁଞ୍ଜିକଲା । ତାର ୟୁରୋପୀୟ ଢଙ୍ଗମିଶା ପୋଷାକ, ଅସଂଲଗ୍ନ ବେଶ ଦେଖି ଚାଲି ଯାଉଥିବା ପଥିକ ଅଟକିଗଲା । ଚିହ୍ନା ଅଚିହ୍ନା ଯୁବକ ପରିଚୟ ପାଇଁ ବ୍ୟାକୁଳ ହେଲେ । ନିଜକୁ ଯେତେ ଛଡ଼ାଇବାକୁ ଚେଷ୍ଟା କଲେ ମଧ୍ୟ ହେଲନାହିଁ—ଏହି ତୁଚ୍ଛ ସାଜ ସଜ୍ଜାର ଆକର୍ଷଣ ତାକୁ ମଦ୍ୟପୀ ଭଳି ମାତାଲ କରିଦେଲା —ସେ ଜାଣି ଜାଣି ବାଟ ଚାଲିବାରେ ଭୁଲକଲା । ଶେଷରେ ଆମେ ପଢ଼ୁଛୁ ବନ ଜାହାଙ୍କର ମୁହଁରେ—ଗୁଣ୍ଡା ସର୍ଦ୍ଦାର ବନ ଜାହାଙ୍କ ସଙ୍ଗେ ସନ୍ଧ୍ୟା ଉପଭୋଗ କରୁଛି । ସେ ବନ ଜାହାଙ୍କର ମୁହଁକୁ ପ୍ରଶ୍ନଭରା ଆଖିରେ

ଅନାଇଲା—ସତେ ଯେମିତ ସୁସ୍ତାଙ୍କଉର ଗୋଟିଏ ଅଙ୍କଣା ବାଝେଇଙ୍କୁ ପ୍ରଥମଥର ପାଇଁ ସେ ଦେଖୁଛି ।

ବନ ନାହାଙ୍କ ଦୁଲସୀକୁ ଖାଲି ଦେଖୁଥାଏ—ତାର ଚନ୍ଦ୍ରତ ମୁହଁ ଦେଖି—ନିଜ ମନଭିତରେ ଚନ୍ଦ୍ରାର ଜାଲ ଖେଳାଇ ହୋଇ ପଡ଼ୁଥାଏ ।

ଦୁଇଟି ଆଖି ଆଉ ଦୁଇଟି ଆଖି ସଙ୍ଗେ ମିଳିତ ହେବାପରେ ସେ ଆଜିର ଗୃହାଣୀ ବଦଳି ଗଲା । ବନ ନାହାଙ୍କ କଳ୍ପନା କରୁଥାଏ ଦୁଲସୀକୁ ବିବାହ କରିବାର ପ୍ରସ୍ତାବ ଦେବ । ସେଥିପାଇଁ ସମୟ ଓ ସୁବିଧାର ସୁଯୋଗ ଖୋଜି ବୁଲୁଥାଏ ।

ଦୁଲସୀ ! ବନ ନାହାଙ୍କ ଅସ୍ପଷ୍ଟ କଣ୍ଠରେ ଡାକିଲା ।

କଣ କହୁଛୁ ନାହାଙ୍କ !

ବନ ନାହାଙ୍କ ସଙ୍କୁଚିତ ହେଲା । ଗୁଣ୍ଡା ସର୍ଦାର ବନ ନାହାଙ୍କର ଆତ୍ମା, ଦୁଲସୀର ସାନିଧ୍ୟରେ ଜଡ଼ ପାଲଟି ଯାଇଥାଏ । ସେହି ଜଡ଼ତାର ସମାଧି ଉପରେ ମାଡ଼ି ବସିଥାଏ ଦୁଲସୀର ରୂପ ଓ ଯୌବନ ।

ତୁ ତ କିଛି କହିଲୁ ନାହିଁ । ମୁଁ ଗୋଟିଏ କଥା ପଚାରିବି କହିବୁ ? ଦୁଲସୀ ପଚାରିଲା !

ଗୋଟିଏ କାହିଁକି—କୋଟିଏ କଥା ପଚାର ଯା'ଲେ ଦୁଲସୀ ! ମନଭରି ଶୁଣିବି—ପ୍ରାଣଦେଇ ଉପଭୋଗ କରିବି । ଯାହା ପାରିବି ଉତ୍ତର ଦେବି ।

ତୁ ଗୁଣ୍ଡା କାହିଁକି ହେଲୁରେ ବନ ନାହାଙ୍କ ?

ବନ ନାହାଙ୍କର ମୁହଁର ରଙ୍ଗ ବଦଳି ଗଲା । ଟିକିଏ ନୀରବ ରହି କହିଲା, ଶୁଣିବୁ ଦୁଲସୀ ? ତୁ ଦମ୍ଭଧରି ଶୁଣି ପାରିବୁ ତ ବନ ନାହାଙ୍କ କାହିଁକି ଗୁଣ୍ଡାହେଲା—ସର୍ଦାର ହେଲା ? ତୁ ବିଶ୍ୱାସ କରିବା ନାହିଁ, ସେ ଗୁଣ୍ଡା ହୋଇଛି ଦୁଃଖୀମୁହଁରେ ହସ ଫୁଟାଇବା

ପାଇଁ—ଦରିଦ୍ର ପେଟରେ ଆଧାର ଦେବାପାଇଁ । ଏହି ରାଉରକେଲାରେ ଯେତେବେଳେ ମୁଁ ଲୋକ ଉପାସରେ ପଡ଼ି କଲବଲ ହୋଇ ଗୃହକର୍ତ୍ତ ଖଣ୍ଡେ ଖୋଜୁଥିଲି, କେହି ପଚାରୁ ନଥିଲେ । କିନ୍ତୁ ଆଜି ଉପରେ ହେଉ କି ତଳରେ ହେଉ ମୋତେ ଖାତିର୍ କରୁଛନ୍ତି—ସମ୍ମାନ ଦେଉଛନ୍ତି । ଶିକ୍ଷିତ ଲୋକ ବେକାର ହେଲେ ଆହୁରି ନିଷ୍ଠୁର, ଆହୁରି ନିର୍ମମ ହୁଅନ୍ତି । ସେ ଯେଉଁ ପାପ କରନ୍ତି ତାହା କଳ୍ପନାର ବାହାରେ । ମୁଁ ସେମାନଙ୍କ ମୁହଁରେ ଆଧାର ଦେଇ ରାଉରକେଲାକୁ ଶାନ୍ତ ରଖିଛି । ଧର୍ମଶାଳାରେ ହତ୍ୟାହତ୍ୟା କଟାଇ ବି ସେମାନେ ଜାଣି ପାରୁନାହାନ୍ତି ତାଙ୍କୁ ଚଳାଉଛି କିଏ ସେ ? ଅନେକ ବେକାର ମୋର ଗୃହକର— ଅନେକ ଦରିଦ୍ର ମୋର ଅନୁଚର । ବର୍ତ୍ତମାନ ଗୃହକର୍ତ୍ତା ଖୋଜିବାକୁ ଦ୍ୱାର ଦୁଆର ହେଉନାହାନ୍ତି କି ପେଟ ବାକଲରେ ଭିକ୍ଷା ଝୁଲି ଧରି କଲବଲ ହେଉନାହାନ୍ତି । ବେଶ୍ ଫୁର୍ତ୍ତିରେ ଅଛି—ତେଣୁ ଗୁଣ୍ଡା ହୋଇଛି, ସର୍ଦ୍ଦାର ହୋଇଛି ।

ଏ ଡକାଯୁଦ୍ଧ, ଏ ଗୁଣ୍ଡାମୀରେ ପାପ ହୁଏରେ ନାହାକ— ମୋର ମନ କହୁଛି ତୁ ନର୍କବାସୀ ହବୁ ।

ବନ ନାହାକ ହସିଲା । କହିଲା, ପାପ ? ନର୍କ !? ଜଣେ କ୍ଷୀର ପଲାଉରେ ପେଟ ପୂରାଇ ମଉଜ କରିବ—ଆଉ ଜଣେ ଲୋକ ଉପାସରେ ପଡ଼ି କଲବଲ ହେଉଥିବ ? କହିଲୁ ଦୁଲାରୀ ! ଯଦି ସେହି କ୍ଷୀର ପଲାଉର ଅଧିକାରୀ, ଅନାହାର ଲୋକଙ୍କ କଥା ନ ବୁଝିଲା ତେବେ ତାର ଶାସ୍ତି କଣ ଡକାଯୁଦ୍ଧ ନୁହେଁ ? ରାଉରକେଲାରେ ଲୋକ ଅଛନ୍ତି ଯେଉଁମାନେ ଖୋଲା ସୂର୍ଯ୍ୟ କିରଣ ତଳେ, ନେଳି ନାଲି ବିଜୁଳି ଆଲୁଅ ତଳେ ବସିରହି ଖାଦ୍ୟ ଜିନିଷକୁ ଭେଜାଲ୍ କରିବାକୁ ନିର୍ଦ୍ଦେଶ ଦିଅନ୍ତି । ସାମାନ୍ୟ କେଇଟା ଟଙ୍କା ଲାଭ ଆଶାରେ ସରଳ ନିରୀହ ପ୍ରାଣକୁ ହତ୍ୟା

କରନ୍ତି—ସେମାନେ ଉଦ୍‌ବୃତ୍ତ ନାଁ—ତାଙ୍କର ଚେଷ୍ଟାରେ ଗଚ୍ଛିତ ଅମାପ ଧନରୁ ସାମାନ୍ୟ କେତୋଟି ଅର୍ଥ ଅପହରଣ କରି ଯିଏ ସେହି ସରଳ ନିରୀହ ଜନତା ହାତକୁ ବଢ଼ାଇଦିଏ, ସିଏ ପ୍ରକୃତ ଉଦ୍‌ବୃତ୍ତ ? ମୋର ବିବେକ କହୁଛି—ମୁଁ ଉଦ୍‌ବୃତ୍ତ କରି ଧର୍ମ କରୁଛି ।

ପାପ ଟଙ୍କାରେ ଧର୍ମ ହୁଏ ନାହିଁ ନାହାକ ! ପାପର ଟଙ୍କା ପାପମାନଙ୍କୁ ଖାଲି ବଢ଼ାଇ ଦିଏ ।

ଗରିବଙ୍କୁ ବଞ୍ଚାଇବା କଣ ପାପ ?

କିଏ କହେ ସେ ପାପ ବୋଲି ? ସେ ତ ଅତି ମହତ୍ ଲୋକର କାର୍ଯ୍ୟ । କିନ୍ତୁ ଉଦ୍‌ବୃତ୍ତ ଟଙ୍କାରେ ନୁହେଁ – ନିଜର ଦେହ ଲଗାଇ ମେହେନତ କରିଥିବା ଅର୍ଥରେ ! ପାରିବୁ ନାହାକ ? ଉଦ୍‌ବୃତ୍ତ ଛାଡ଼ି ମେହନତ୍ କରି ପାଞ୍ଚଣ ଦୁଃଖୀ ମୁହଁରେ ଆଧାର ଦେଇ ପାରିବୁ ?

କିନ୍ତୁ ଏତେ ଟଙ୍କା ଯୋଗାଡ଼ ହେବ କେଉଁଠୁ ? ଟିକିଏ କୌଶଳ ସହକାରେ କାମ ଗୁଡ଼ି ପାରିଲେ ହାତରେ ଟଙ୍କା ଆସି ଜମାହେଲା । ଶହ ଶହ ଲୋକ ଖାଇଲେ, ପିଇଲେ, କିନ୍ତୁ ଦେହ ଲଗା ପରିଶ୍ରମ କଲେ କଣ ସେତିକି ଲୋକ ବଞ୍ଚିବେ—ଏବେ ଖାଇପିଇ ବଳକା ହେଉଛି – ଆରାମ ପୂର୍ତ୍ତି ପାଇଁ ସମୟ ମିଳୁଛି— ଖାଇ ଖୁଆଇ ସମ୍ମାନ ପାଉଛି ।

କିନ୍ତୁ କେତେ ଲୋକ ଖାଇଲେ ? ଏଇଆ କଲେ ଅନେକ ଲୋକ କର୍ମକୁଣ୍ଠି ହୋଇଯିବେ । ବସି ଖାଇବାର ମୋହ ଗୁଡ଼ିବାକୁ ନାରାଜ ହେବେ । ଖାଇଲାପାଏ ପ୍ରଶଂସା କରୁଥିବେ, ଖାଇବାକୁ ନ ପାଇଲେ ନିନ୍ଦା କରିବେ । ଦାଶ ପଚିଶିଲୋକଙ୍କ ପୂର୍ତ୍ତିପାଇଁ ତୁ ଏହି ହୀନ ବ୍ୟବସାୟ କରିବା କଣ ଆଇନ ସମ୍ମତ ?

ଦଶପଚଶ ଲୋକ କହୁଛନ୍ତି ? ଶହ ଶହ ଦୀନଦୁଃଖୀ ଆସ୍ଥମରେ ଅଛନ୍ତି । ଅନେକ ଶିକ୍ଷିତ ବେକାର ଘୂରି କରୁଛନ୍ତି । ଆଇନ ମୋର ପାଖମାଡ଼ ପାରିବ ନାହିଁ ।

ହଉ ଏବେ ଶହ ଗୁଡ଼ ପାଞ୍ଚଶ ହେଲା । କିନ୍ତୁ ଏ ସୃଷ୍ଟିରେ ଦୀନ ଦୁଃଖୀଙ୍କ ସଂଖ୍ୟା କେତେ ହେବ ଜାଣୁ ? ଏହି ରାଉରକେଲା ଭିତରେ ହଜାର ହଜାର ଦୁଃଖୀ ମିଳିବେ — କେତେ ଲୋକଙ୍କୁ ସମ୍ଭାଳିବୁ — ଉଦ୍‌ବୃତ୍ତ ପଇସାରେ କେତେ ଲୋକଙ୍କୁ ପାଳିବୁ ?

ତନ ନାହାକର ମୁହଁରେ ଭାବାନ୍ତର ପରିଲକ୍ଷିତ ହେଲା । ମନେ ମନେ ଦୁଲଣୀ କଥାକୁ ସବୁ ଦିଗରୁ ପରୀକ୍ଷା କରିବାକୁ ଲାଗିଲା । ଏ ଦୁନିଆରେ ଯେ ଅନେକ ଦୁଃଖୀ । ଜଣେ ମଣିଷ କାହାକୁ କେତେ ବାଣ୍ଟିବ ? ଗୋଟିଏ ହାତର ସେଇଟାକୁ ଗୋଟିଏ ହାତ ଅନାଇ ରହିଲେ ଅବସ୍ଥା ବରଂ ମନ୍ଦ ଆଡକୁ ଯିବସିନା, ସୁଧୁରିବ ନାହିଁ । ସେ କ୍ଷଣେ କାଳ ନୀରବ ହେଲା ।

ଦୁଲଣୀ ବନ ନାହାକର ବିବ୍ରତ ମୁଖ ମଣ୍ଡଳକୁ ଦେଖି ପଚାରିଲା, କଣ ଭାବିଲୁ ?

ଭାବିବେ ଆଉ ସେ କ'ଣ ? କାଲିକା ପିଲାଟିଏ — ଗାଠ ଠିକଏ ପଢ଼ି ଭର୍ମାନ ଲୋକଙ୍କ ସଙ୍ଗେ ମିଳାମିଶା କରିଛୁ ବୋଲି ଗୁଡ଼ାଏ ଅବାନ୍ତର କଥା ଉଠାଉଛୁ । ହାଉଳି ବଡ଼ କଡ଼ା ମଣା ଗଳାରେ ଆଗୁଆ ଇଡ଼ି ଜବାବ ଦେଲା ।

ଦୁଲଣୀ ଅବାନ୍ତର କିଛି କହୁନା । ସେ ଠିକ୍ କହୁଛି । ଆମର ଭାବବାରେ ଭୁଲ ରହିଛି — କିନ୍ତୁ ମୁଁ ବେଳେ ବେଳେ ଖୋଜୁଛିଏ, ମଣିଷ ମଣିଷ ଭିତରେ ପାର୍ଥକ୍ୟ ରହିଲା କେଉଁଠି ? ଗୋଟିଏ ରକ୍ତ ମାଂସର ଉପାଦାନରେ ଗଢ଼ା ଏହି ମଣିଷ ଜାତି, ତଥାପି ଜଣେ ରାଜ-ସମ୍ମାନ ପାଉଛି ତ, ଜଣକୁ ଛୁଇଁଲେ ଘୃଣା କରୁଛି । କିନ୍ତୁ ଏ ସମସ୍ୟାର ଉତ୍ତର ମୁଁ ପାଏନାହିଁ ।

ଡ୍ରାଇଭର ଡମ ଡମ ହୋଇ ଦୂରରେ ଥିବା ଟାକ୍‌ସି ଭିତରକୁ ଚାଲିଗଲା ।

ଏହା ହିଁ ତ ସୃଷ୍ଟିର ପ୍ରହେଳିକା ନାହାକ ! ଏ ସବୁ ରହସ୍ୟମୟ ଭଗବାନଙ୍କର ଇଚ୍ଛା ବୋଧହୁଏ । ପରିସ୍ଥିତି ସମାନ ଥିଲେ ବି କାହା ପାଇଁରେ ବିଭିନ୍ନତା ସୃଷ୍ଟି କରି ସେ ମଜା ଦେଖନ୍ତି । ତାଙ୍କର ଅଭିପ୍ରାୟ ବୁଝି ହୁଏନା । ଏହି ମନ ଏହି ପ୍ରାଣ ଭିତରେ ପ୍ରତି-ମୂହୂର୍ତ୍ତରେ ବିଭିନ୍ନ ଭାବନା ପଶେ, ଗୋଟିଏ ଭାବନା ଅନ୍ୟ ଭାବନାର ଅବରୋଧ କରେ । ଆମେ ଖାଲି ଆଶ୍ଚର୍ଯ୍ୟ ହେଉ, ବିସ୍ମିତ ହେଉ କିନ୍ତୁ କାରଣ ଖୋଜି ପାଉନାହିଁ । ଦୁଲାରୀ ଉତ୍ତର ଦେଲା ।

ଦୁଲାରୀର ଏହି କହିବାର ଭଙ୍ଗୀରେ ବନ ନାହାକ ଅତ୍ୟନ୍ତ ମୁଗ୍ଧ ହୋଇଥାଏ । ଶରୀରର ଆକର୍ଷ ମନ ଭିତରେ ପଶି ଚହଲା ଚଳାଇ ଦେଉଥାଏ । ସେ ବିସ୍ମୟ ଓ ବିଭୋର ହୋଇ ଖାଲି ଦୁଲାରୀ କଥାକୁ ପିଇ ଯାଉଥାଏ ।

ଦୁଲାରୀ ବନ ନାହାକର ପ୍ରଶାନ୍ତ ମୁଖ ମଣ୍ଡଳରେ ଅତ୍ୟୁଜ୍ଜ୍ୱଳ ଦୀପ୍ତିରେ ଝଲକ ଦେଖିବାକୁ ପାଇଲା । ନାହାକର ଭାବାନ୍ତର ତାର ମନ ଭିତରେ ଅନେକ ଉତ୍ସାହ ଭରି ଦେଉଥିଲା । ବନ ନାହାକର ପେଶୀ ବହୁଳ ଅଙ୍ଗ ଲତାରୁ ମୁହଁ ଫେରାଇ ତାର ସରସ ସତେଜ ଆଖିରେ ଆଖି ମିଶାଇଲା । ଦୁଇଟି ଆଖି ଆଉ ଦୁଇଟି ଆଖି ସହିତ ମିଶି ଫୁସୁରୁ ଫାସୁରୁ କଥା ହେଲେ । ଦୁଲାରୀ ଅନୁଭବ କଲା ବନ ନାହାକର ଆତ୍ମା ଏବେ ମୁଲ୍ଲା ପଥର ହୋଇନାହିଁ—ଆତ୍ମାର ଜ୍ୟୋତି ପାଉଁଶ ତଳେ ମହଲଣ ଦେଖା ଯାଉଥିଲା । ସେତିକି ଆଡେଇ ଦେଲେ ସର୍ଦ୍ଦାର ବନ ନାହାକ ଶାନ୍ତ ବନ ନାହାକରେ ପରିଣତ ହେବ । ବନ ନାହାକ ପ୍ରତି ଦୁଲାରୀ ମନରେ ଦୁର୍ବଳତା ଜାଗିଉଠିଲା । ତାର ପ୍ରାଣର ଗୋଟିଏ ସୂକ୍ଷ୍ମ ତନ୍ତ୍ରୀ ଭିତରେ ଆଲୋଡ଼ନର ଢେଉ ନାଚି ଉଠିଲା ।

ତରୁଣୀ ମନର ଚପଳ ବୀଣା ତାରରେ ତାର ଅଜ୍ଞାଣତରେ ଗୋଟିଏ ମଧୁର ମୂର୍ଚ୍ଛନା ସୃଷ୍ଟି ହେଲା । ସେ କୌତୁହଳ ସହକାରେ ପ୍ରଶ୍ନ କଲା —ଉତ୍ସାହିତ କରିବାକୁ ସତରେ କଣ ତୋତେ ଭଲ ଲାଗେରେ ନାହାକି ? ଭଲ ମଣିଷଟିଏ ହେବାକୁ କଣ ତୋର ଲୋଭ ହୁଏ ନାହିଁ ?

ଭଲ ହେବାକୁ କାହାର ଇଚ୍ଛା ନାହିଁ ଦୁଲଣୀ ? କିନ୍ତୁ ଅବସ୍ଥା ସେତିକ କରାଇ ଦିଏ ନାହିଁ । ଏଇଥି ପାଇଁ ନିଷ୍ଠା ଓ ସାଧନା ଆବଶ୍ୟକ ଜଣେ ପର୍ଯ୍ୟବେକ୍ଷକର ସହାନୁଭୂତିଶୀଳ ଉପଦେଶ ଆବଶ୍ୟକ ! ପାରିବୁ ମୋତେ ସାହାଯ୍ୟ କରି ?

ଦୁଲଣୀ କହିଲା, ପାରିବି ନାହିଁ କାହିଁକି ? କିନ୍ତୁ ତୁ କଣ ପସନ୍ଦ କରିବୁ ତୋଠୁ ସ୍ନେହ, ତୋଠୁ ଆଦର ଶୋଚନୀୟ ଅବସ୍ଥାରେ ପଡ଼ି ଉଦକ ବିକଳ ହେଉଥିବା ଗୋଟିଏ ଅଜ୍ଞାତ ବାଳିକାର ସାହଚର୍ଯ୍ୟ ?

ସବୁ ପାରିବି ଦୁଲଣୀ ! ତୋର ସାହାଯ୍ୟ ପାଇଲେ ମୋ ପକ୍ଷରେ କିଛି ହେଲେ ଅସାଧ୍ୟ ହେବ ନାହିଁ ।

କିନ୍ତୁ ମୋର ଅତୀତ.............

ମୋର ଅତୀତଠାରୁ କଣ ସିଏ ଅଧିକ ଲମ୍ବା, ଅଧିକ ତିକ୍ତ ? ମୋ ତୁଳନାରେ ପିଲାଲୋକ ତୁ—ମୋଠୁ ଦଶ ବାର ବର୍ଷର ସାନ—ଜୀବନ ସହିତ ଅଳ୍ପଦିନ ହେଲା ପରିଚୟ କରିଛୁ—ତୁ କ'ଣ ଜାଣିଛୁ କି ସଂଗ୍ରାମ ଭିତରେ ମନୁଷ୍ୟ ଅହର୍ନିଶି ଗତିକରେ ? ପିଲାମନ ତୋର—ବୁଲି ଯାଇଥିଲା, ସିଏ କଣ ପୃଥିବୀରେ ଭୁଲି ଯିବନି ? ତୁ ରାଜି ହେଲେ ଆମେ ଆମର ନୂତନ ନୀଡ଼ ରଚନା କରିବା—ମୁଁ ଭୁଲିଯିବି ମୋର ଅତୀତ, ଅତୀତର ସେହି ହୀନ ଅପକର୍ମ, ଆଉ ତୁ ମଧ୍ୟ ଭୁଲିଯିବୁ ଯେ ଦିନେ ତୁ ପରଗୃହିକା ଥିଲୁ ।

ଆମର ସଂସାର ଅତ୍ୟନ୍ତ ସୁନ୍ଦର ହେବ ଦୁଲଣି ! ସେ ସ୍ୱପ୍ନ ଭଳି ସୁନ୍ଦର ହେବ, ସଙ୍ଗୀତ ଭଳି ମଧୁର ହେବ ।

କିନ୍ତୁ ମୋର ବାପା ମାଆ·········

ତାଙ୍କର ଆଶୀର୍ବାଦ ନ ନେଇ କଣ ଆମେ ଆଗେଇବା ଉଚିତ ହେବ ?

ଦୁଲଣି ଓ ବନ ନାହାକ ରାଉରକେଲା ଅଭିମୁଖରେ ଚାଲିବାକୁ ଲାଗିଲେ ଖୋଲା ପାଦରେ ।

ବନ ନାହାକର ଅତୀତ ଇତିହାସର କେଇଟି ଦୁଷ୍ଟ ନଷ୍ଟ ମଳିଚିଆ ପୃଷ୍ଠାକୁ ଗର୍ଭ ଭିତରେ ଲୁଚାଇ ରାସ୍ତା କଡ଼ରେ ପଡ଼ି ରହିଲା କାଳ ନମ୍ବର ଦିଆ ଟାକ୍ସି ଖଣ୍ଡିକ ଓ ତା'ର ଅତୀତର ଅନୁଚର ଟାକ୍ସି ଡ୍ରାଇଭର ।

ଅନେକ ଦିନ ପରେ ସେଦିନ ପୁଣିଥରେ ସାମୁଏଲ୍ ସାହୁ ଆସିଲା । ବଙ୍କିଙ୍କ ଘର ପଚାରି ପଚାରି ଆସିଲା ବେଳକୁ ମୁହଁସଞ୍ଜ ଗଡ଼ି ଯାଇଥିଲା ।

ଦୁଲଣି ଜର୍ମାନ କଲୋନୀକୁ ଯାଇ ଫେରି ନଥାଏ—

ଗୁଲାବୀ ରାତି ଡ଼ିଉଟି ପାଇଁ ଘର ଛାଡ଼ିଥାଏ—

ବଙ୍କିଙ୍କ ଏକୁଟିଆ ବସି ଚିରା ଶାଢ଼ୀଟିକୁ ସିଲେଇ କରୁଥାଏ ।

ସାମୁଏଲ ସାହୁ ଆପଣା ଲୋକ ଭଳି ବାଛ ବିଚାର ନ କରି ଘର ଭିତରେ ପଶିଲା । ବଙ୍କିଙ୍କ ମୁହଁ ଉଠାଇ ଦେଖିଲା ମିସିନାରୀର ସାମୁଏଲ ସାହୁ ଆସିଛି—ସେ ବେଳେ ବେଳେ ଏମିତି ଅବେଳରେ

ଆସେ—ଭଲମନ୍ଦ ପଗ୍ଡର ଫେର ଯାଏ । ଦୁଲାଗ୍ରି ବାପକୁ ପ୍ରଥମ କରି ଜେଲ ହେଲାବେଳେ ସେ ପ୍ରାୟ ପ୍ରତିଦିନ ଆସୁଥିଲା । ଗୁଲାବୀ, ଦୁଲାଗ୍ରିକୁ ଇସ୍କୁଲକୁ ପଠାଇ, ଦୁଲଗ୍ରିପାଇଁ ଘରୁଆ କାମ ଖଟଣ୍ଡି ଯୋଗାଡ଼ କରିଦେଲା— ସବୁ ଠଇଥାନ ହେଲା ପରେ ଆଉ ସେମିତି ଆସିଲା ନାହିଁ —ଏବେ ପୁଣି ଥରେ ଆସିଛି ।

ସାମୁଏଲ ସାହୁଙ୍କୁ ଦେଖିଲେ ବଟର୍ଗିର ସାହସ ଲାଗିଉଠେ । ମନେ ହବେ ତାର ବାପ ଘରର ମଣିଷ ଆସିଛି । ପିଠିର ଭାଇଭଳି ହେଲା ନହେଲା ସବୁ ବଖାଣେ—ବେଳେ ବେଳେ ଝିଅ ଦିହାକୁ ଆକଟ କରିବାକୁ ଅନୁରୋଧ କରେ । ସାମୁଏଲ ସାହୁ ସବୁ ଶୁଣେ- ଯେତକ ପାରେ ହାତେ ହାତେ କରି ପକାଏ—ଗୁଲାବୀ ଓ ଦୁଲାଗ୍ରି ବୁଝନ୍ତି ବାପ ସାଙ୍ଗର ବାପ ଭଳି ମଣିଷଟିଏ । ସାମୁଏଲ ସାହୁ ସେଘରେ ଆତ୍ମୀୟର ସମ୍ମାନ ପାଏ, ଅଭିଭାବକର ଅଭ୍ୟର୍ଥନା ପାଏ । ଦାଣ୍ଡଲୋକ ବୁଝନ୍ତି, ଏହି ସରଳ ଶାନ୍ତ ସାମୁଏଲ ସାହୁ ବଟର୍ଗି ଘରର ମୁରବୀ !

ସାମୁଏଲ ସାହୁ ଭାବେ ଗୃରୁଆ ଓରାଂର ଅନୁପସ୍ଥିତିରେ ତା ଘରଖବର ବୁଝିବା ନିଜର ଏକାନ୍ତ କର୍ତ୍ତବ୍ୟ । ଗୃରୁଆ ଓରାଂ ଜେଲ ଗଲଦିନୁ ଟୋକିଏ ପରିବାର ନିଃସ୍ୱ ହୋଇଗଲା । ଏତେବଡ଼ ଦୁନିଆରେ ତିନୋଟି ମାଈପି ବ୍ୟତୀତ ଆଉ କେହି ନାହାନ୍ତି । ଗୃରୁଆ ଥିଲାବେଳେ ତାହାର ହାତକୁ ଅନାଇ ଥିଲେ । ଏବେ କିଏ କେତେ ଦେବ ? ଗାଁରେ ଥିଲାବେଳେ ପାଖ ପଡ଼ୋଶୀ ଆହା କରୁଥିଲେ । ଭଲରେ ମନ୍ଦରେ ଛିଡ଼ାହୋଇ ଦି'ପଦ ଆଶ୍ୱାସନା ଦେଉଥିଲେ । ଗାଁ ଉଠିଗଲା ଦିନୁ ସମଗ୍ର ଓରାଂଟୋଲା ଛିନ୍ନଛତ୍ର ହୋଇଗଲା । କିଏ କୁଆଡ଼େ ଯାଇ ମାଡ଼ ବାନ୍ଧିଲେ ଜଣାଗଲା ନାହିଁ । ଟେହେଟ ବଜାରରେ କେଉଁ ଅଜଣା ଗାଁ ଭିତରେ କାହାର ଓଳିତଳେ କି

ବାହାପଟେ ଯାଇ କଏ କଏ ମୂଣ୍ଡ ଗୁଞ୍ଜିଲେ, ତାହାର ହିସାବ କେହି କଲେ ନାହିଁ । ଏତେବଡ଼ ଗାଆଁର ମଣିଷ ଯାକ ପରସ୍ପରର ସମ୍ପର୍କରୁ ଛିନ୍ନ ହୋଇ, ଅଜ୍ଞାତ ଭାବରେ କିଛିଦିନ କାଳ ଯାପନ କରିବେ । ବଞ୍ଚିଥିଲା ଯାଏ ସେହି ଅତୀତର ଉର୍ଗାଂ ଢୋଲ, ଢୋଲ ଭିତରେ ସୁନ୍ଦର ନିବୁଜ ଘର, ଧାଙ୍ଗଡ଼ା ଧାଙ୍ଗଡ଼ୀ ନାଚ, ଧନୁଶରର ଶୀକାର ଇତ୍ୟାଦି ବିଷୟରେ ନିଜ ନିଜ ଭିତରେ କଥାବାର୍ତ୍ତା ହେବେ । ସେମାନଙ୍କ ମୁହଁରେ ମୃତ ରାଉରକେଲାର ଓ ପାଖ ଆଖ ଅଞ୍ଚଳର ଆଦିବାସୀ ଗାଆଁ ବଞ୍ଚିରହିଥିବ ! ତାପରେ ହଠାତ୍ କିଏତ ଦିନେ ସେ ସବୁ ବନ୍ଦ ହୋଇ ଯିବ । ବୁଢ଼ା ବୁଢ଼ୀଙ୍କର ପରଲୋକପରେ ଶ୍ରେଷ୍ଠ ଆଦିବାସୀ ବାଳକ ବାଳିକା ସେ ସବୁ ଭୁଲିଯିବେ । ସେମାନେ ଦେଖିବେ ସମୃଦ୍ଧ ରାଉରକେଲା, ମୂଣ୍ଡନୋଇଁ ଅନେକ ଦିନରୁ ଛିଡ଼ା ହୋଇଛି—କିନ୍ତୁ କଳ୍ପନା କରି ପାରିବେ ନାହିଁ ଯେ, ଏହି ସମୃଦ୍ଧ ରାଉରକେଲା ତାଙ୍କରି ବାପ ଅଜାଙ୍କର ଘର ସଂସାରକୁ ବିନଷ୍ଟ କରି, ଆଦିବାସୀ ଜାତିର ବିରାଟ ଅତୀତକୁ ବିଦଗ୍ଧ କରି, ଅଗଣନ ପରିବାରର ଭବିଷ୍ୟତ କଳ୍ପନା ଜଳ୍ପନା ଉପରେ ଜଳମୁଦ ଦେଇ, ଦିନେ ଗୋଟିଏ ଗୋଲିଆ ସକାଳରେ ହଠାତ୍ ଆତ୍ମପ୍ରକାଶ କରିଥିଲା ।

ପ୍ଲାଣ୍ଟ ଏରିଆ ଓ ଟାଉନସିପ୍‌ର ଆୟୁଷ ଅତି ଅଳ୍ପଦିନର—ପଚିଶବର୍ଷ ବା ତିରିଶବର୍ଷ ତଳେ ଏଠି ଯୋଉଁଠି ଅଛି ତାର ତଳ ପ୍ରସ୍ତରେ ରହିଛି ଅନେକ ଆଦିବାସୀ ଓ ଅଣଆଦିବାସୀ ପରିବାରର ପୁରୁଣା ଲୋକଙ୍କର ଖାଣ୍ଟି ମାଟିର ଘର । ସେମାନେ ଦିନେ ବଞ୍ଚିଥିଲେ ଓ ବଣ ପାହାଡ଼ାମୟ ଏହି ବିରାଟ ରାଉରକେଲାର ମାନଚିତ୍ର କରିଥିଲେ । ପଥର ଫଟାଇ ଜମିକରି, ଗଛକାଟି ହଳ ଚଷି ସେମାନେ ସୁଖରେ ବଞ୍ଚିବାର ସ୍ୱପ୍ନ ଦେଖୁଥିଲେ । ଆଜି

ଯେଉଁଠି ମାଳ, କେନ୍ଦଳ ବଙ୍କ୍‌ଲ ଆଲୁଅର ମହୋତ୍ସବ ହେଉଛି, ସେଇଠି ଦିନେ ମସାଲ ଜଳୁଥିଲା, ଜଡ଼ାଦୀପ ଜଳୁଥିଲା । ଆଜି ଯାହାକୁ କଷିଙ୍ଗ ଅଞ୍ଚଳ ରୂପେ ଘୋଷଣା କରା ଯାଇଛି, ତାହାର ଭିତରେ ଧାଙ୍ଗଡ଼ା ଧାଙ୍ଗଡ଼ୀମାନଙ୍କର ଝୁମର ନାଚ ହେଉଥିଲା । ମାଦଳ ଆଉ ଢୋଲ ବାଦ୍ୟରେ ଖଣ୍ଡ ମଣ୍ଡଳ ପୂରି ଉଠୁଥିଲା । ଏଠି ସେଠି ଅଜାଣତରେ ରହି ଯାଇଥିବା ନୀରବ ପ୍ରବୁଣା ଗଛ ସବୁ ଜାଣିଛନ୍ତି, କେଡ଼େ ସୁନ୍ଦର ଥିଲା ସେ ଦିନ, କେତେ ପରିଷ୍କାର ଥିଲା ସେଦିନ ମଣିଷର ମନ ! ସେହିପରି ବିରାଟ ଅତୀତ ଉପରେ କାଳ-ପରଦା ପକାଇ ଠିଆ ହୋଇଛି ଝାକଝମକିଆ ବର୍ତ୍ତମାନ । ଆଉ ଏହି ବର୍ତ୍ତମାନ ରାଉରକେଲା ଗର୍ଭଭିତରେ ରହିଲା ପ୍ରକୃତ ରାଉରକେଲାର ସମାଧି ।

ରାଉରକେଲା ଅଞ୍ଚଳରେ ଯେଉଁଦିନ ପ୍ରଥମ କରି ଘୋଷଣା କରାଗଲା ଯେ ସମସ୍ତେ ଗାଁ ଛାଡ଼ିବାକୁ ବାଧ ହେବେ, ଲୋକଙ୍କର ହଂସ ଉଡ଼ିଗଲା । ସେ ଅଞ୍ଚଳର ଅପେକ୍ଷାକୃତ ଅଶିକ୍ଷିତ ଗ୍ରାମବାସୀ-ମାନେ ଦେବତାର ସାହାଯ୍ୟ ଲାଭପାଇଁ କେତେ ହୋମ ଯଜ୍ଞର ଆରମ୍ଭ କଲେ । କିନ୍ତୁ ସେ ଡ଼ାକ ଦେବତା କାନକୁ ପଶିଲା କି ନାହିଁ କେଜାଣି, ସରକାରଙ୍କ ନିର୍ଦ୍ଦେଶର ଅଦଳ ବଦଳ ହେଲାନାହିଁ । ଗ୍ରାମବାସୀମାନେ ବାସ ଓ କୃଷି ଉପଯୋଗୀ ଜମି ମାଗିଲେ । ସରକାର ଏଥିପାଇଁ ନିର୍ଭର ପ୍ରତିଶ୍ରୁତି ଦେଇଥିଲେହେଁ— ପ୍ରତିଶ୍ରୁତିକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ନିଯୁକ୍ତ ସରକାରୀ କର୍ମଚାରୀମାନେ ସେଥିରେ ଗୁରୁତ୍ୱ ଦେଲେ ନାହିଁ । ସରକାର ପକ୍ଷରୁ ଖଞ୍ଜାହେଲା ଅନେକ ଯାନବାହନ—କିନ୍ତୁ ସେ ଯାନବାହନ ବିପଦଗ୍ରସ୍ତ ଗ୍ରାମବାସୀଙ୍କୁ ଅପନ୍ତରା ବଣଭିତରେ ଛାଡ଼ିଦେଲା ସିନା, ବାସ ଓ କୃଷି ଉପଯୋଗୀ କୌଣସି ଜମିର ସନ୍ଧାନ ଦେଇ ପାରିଲା ନାହିଁ । ସରକାରଙ୍କୁ ଦେବତାଭଳି ମାନି ଚଳୁଥିବା ସରଳ ଗ୍ରାମ-

ବାସୀଙ୍କ ମଧ୍ୟରେ ଅଶାନ୍ତି ଉପୁଜିଗଲା । ସେମାନେ ଭଗବାନଙ୍କୁ ସାକ୍ଷୀରଖି ଅଭିଶାପ ଦେବାକୁ ଲାଗିଲେ । କିନ୍ତୁ ଭଗବାନ ଆସି ସାହାଯ୍ୟ କଲେ ନାହିଁ, କି ସେ ବୁକୁଫଟା, ଅଶ୍ରୁଝରା ଅଭିଶାପ କିଛି କଲାନାହିଁ । ଏହି ଗ୍ରାମବାସୀଙ୍କୁ ସରକାରଙ୍କ ସୁବ୍ୟବସ୍ଥା କଥା ଶୁଣାଇବା ଦୁଃଖଦାୟକ ତାଙ୍କର ସରଳ ହୃଦୟକୁ ଆଘାତ କରି ଉତ୍ୟକ୍ତ କରାଗଲା ।

ଆଜି ଚତୁର୍ଥ ବର୍ଷ ଶେଷ ହୋଇଛି । ବିରଞ୍ଚି କାନରେ ସେତକ ପକାଇ ଦେବା ସଙ୍ଗେ ସଙ୍ଗେ ଗୁଲବୀର ବିବାହ ପ୍ରସ୍ତାବ ପକାଇବ । ଗୁଲବୀର ଭାବ ପଡ଼ିକୁ ସେ ନିଜେ ପସନ୍ଦ କରିଛି । ତାର ଜମି ବାଡ଼ି, ଦୋକାନ କାରବାର କଥା କହିଲେ ବିରଞ୍ଚି ବୋଧହୁଏ ଅମଙ୍ଗ ହେବନାହିଁ ।

ସେତିକିବେଳକୁ ବିରଞ୍ଚିର ବାଁ ଆଖିପତା ଘନ ଘନ ହୋଇ କମ୍ପୁଛି । ବାଁ ହାତ ମଝିବାହୁରୁ ପୁଲାଏ ରହି ରହି ଥରି ଉଠୁଛି । ମନଟି ନାନା ଭାବନାରେ ବ୍ୟସ୍ତ ଥିଲେ ବି ବେଶ୍ ଫୁର୍ତ୍ତି ଲାଗୁଛି । ବାରମ୍ବାର ମନେ ପଡୁଛି ଗୁରୁଆ ! ବିଭା ବେଳର ମହଲଣ କଥା ମନ ଭିତରଟା ମହକାଇ ଦେଉଛି ।

ସାମୁଏଲ ସାହୁ ଦୀର୍ଘ ନୀରବତା ପରେ କଣ କହି ପ୍ରଥମେ କଥା ଆରମ୍ଭ କରିବ ଭାବ ହଉଛି—ଭାବ ଭାବ ମୁହୂର୍ତ୍ତେକାଳ କଟିଗଲା । କେହି କିଛି କହି ପାରିଲେ ନାହିଁ ।

ବିରଞ୍ଚି ଦେଖିଲା ସାମୁଏଲ ସାହୁ ମୁହଁଖଣ୍ଡିକ କଣ କହିବ କହିବ ହୋଇ ଉବୁଟବୁ ହୋଇ ଗଲାଣି । ଏହି ଶାନ୍ତ ସାମୁଏଲଙ୍କୁ ଦେଖିଲେ ସହାନୁଭୂତିରେ ମନ ଫାଟିପଡ଼େ । ବାହାସାହ ନହୋଇ ଆଜଯାଏ ସେମିତି ରହିଗଲା । ପର ଜଞ୍ଜାଳକୁ ନିଜ ମୁଣ୍ଡରେ ମୁଣ୍ଡାଇ ବାଟ ଚାଲୁଛି । ସହିବାକୁ ସମୁଦ୍ରଭଳି । ଯାହା କହିଲେ ଧରିବନାହିଁ । ଏତେ ଜମିବାଡ଼ର ଅଧିକାରୀ ହୋଇଥିଲେ

ଆଉ କଏ ଜମିଦାରର ଅପୂସ କରନ୍ତା । କନୁ ଅପୂସ କଥା ବୁଝିର ଆଉ, ଦେହ ମେହେନତ କର ବଶ୍ରାମ ବ ନେବନାହିଁ । ସେଦିନ ତାର ଖଇପୁହା ତାତ ଦେହରେ ସାଇକେଲ ଦଉଡ଼ା ଦେଖି ଭାରିଙ୍କ ପଗୃରଦେଲ—

କୁଆଡ଼େ ଗୃଲଲ ସାମୁଏଲ ଭାଇ !

ସଭାକୁ……

କ ସଭା ସଏ ?

ସାଧାରଣ ସଭାର ଆୟୋଜନ ହୋଇଛି । ସରକାର ବାଜରକେଲରେ ଲୁହା କାରଖାନା କରିବେ ବୋଲି ପ୍ରଜାମାନଙ୍କୁ ବାଧ କର ଗାଁଛଡା, ଲକ୍ଷ୍ମୀଛଡ଼ା କଲେ । ଅଥଚ ଏବେ ସେମାନଙ୍କର ଥଇଥାନ ବ୍ୟବସ୍ଥା କରୁନାହାନ୍ତ କ ଉଚତ କ୍ଷତପୂରଣ ଦେଉ ନାହାନ୍ତ । ସେଇଥିପାଇଁ ଦାବୀ ଜଣାଇବାକୁ—

ଦାବୀ ଜଣାଇବାକୁ ଏ ଖଇପୁଟା ଦେହରେ ଧାଉଁଛ— ନୁହେଁ ? ତୁମ ଦେହ କଥା ପ୍ରଥମେ ଚିନ୍ତାକର ବୁଝି— ତାପରେ ଆଉ ପାଞ୍ଚଜଣଙ୍କ କଥା ଦେଖିବ ।

ସମସ୍ତ କାହିଁ ଭାବନ୍ତି ? ତା'ଛଡ଼ା ପାଞ୍ଚଜଣଙ୍କ ଆଗରେ ଜଣକ କଥାତ ଆଗ ନୁହେଁ ।

ସମସ୍ତ ନାହିଁ ଯଦ—ସେସବୁ କଥା ବୁଝିବାକୁ ଜଣକୁ ଘରକୁ ଆଣୁନ ! ସତରେ ସାମୁଏଲ ଭାଇ ! ତମେ ବାହାସାହ କର ସଂସାରମୁହାଁ ହେଲେ ଭଲହୁଅନ୍ତା ।

ନଜ କଥା ବୁଝିବାକୁ ଯାହାର ବେଳନାହିଁ—ଆଉଜଣକୁ ଡାକିଆଣି ହନ୍ତସନ୍ତ କରିବା କଣ ଭଲ ?

ଭାରିଙ୍କ ଏ ତୀକ୍ଷ୍ଣ କଥାର ଜବାବ ଦେଇ ପାରିଲନାହିଁ । ଜାଣିଲ, ଏ ଯାଏ ଜୀବନ ଦେଉଛି ଭବରଲେ ଯାଇଛେ—ସଂସାର ପ୍ରତ ବାମୁଖ ହେବା କଣ ଭଲ ?

କାହିଁକି ? ବିବାହ କଣ ସଂସାର ଧର୍ମରେ ଏକାନ୍ତ ଆବଶ୍ୟକ ?

ବରଙ୍ଗି ଏଥର ଚୁପ୍ ରହିଲା । ଭାବିଲା ସାମୁଏଲ ଭାଇଟା ଘରଛଡ଼ା ମଣିଷ ! ଘରଉଆସକେଲା ହୋଇ କାହାର କେତେ କଣ ନଷ୍ଟବିନଷ୍ଟ ହୋଇ ଯାଇନାହିଁ ? କିନ୍ତୁ ଏ ଗୋଟିଏ ମଣିଷ, ଯିଏ ଜୀବନ ଥାଇ ବି ମଲାପରି ହୋଇଗଲା । ଜୀବନକୁ ଭୋଗ କରିବା କଣ, ଗୁଡ଼ାଏ ଜଞ୍ଜାଳ, ଗୁଡ଼ାଏ ଚିନ୍ତା ନେଇ ଏପାଖ ସେପାଖ ହେଉଛି । ଖାଇବା ପିଇବାର ଠିକ୍‌ଠିକଣା ନାହିଁ—ପରପାଇଁ ପ୍ରାଣକୁ ଖାଲି ଛଳବଳ କରି ହେଉଛି । ମଣିଷ ନମ ହୋଇ ନିଜ ସୁଖ ନିଜ ସୌଭାଗ୍ୟ ନେଇ ସାରା ଜୀବନ ବ୍ୟସ୍ତ ରହେ । ପଡ଼ିଶା ଘରର ସୁଖ ଦୁଃଖର ଖବର ରଖେନାହିଁ—କିନ୍ତୁ ତାହାର ଭିତରେ କୋଟିକରେ ଗୋଟିଏ ବାହାରନ୍ତି, ଯିଏ ଜୀବନକୁ ପଣ କରି ପରପାଇଁ ଖଟେ । ସିଏ ଏହି ଶାନ୍ତ ସରଳ ସାମୁଏଲ ସାହୁ ! ଅଶିକ୍ଷିତ ଆଦିବାସୀ ପାଇଁ କେତେ ଦରଦ ତାର । ତାର ବଂଶର କେଉଁ ବାପ କି ଅଜା ସ୍ୱାର୍ଥ ମୋହରେ ପଡ଼ି ସିନା ଧର୍ମଛଡ଼ା ହୋଇ ଥିଲେ, କିନ୍ତୁ ତାଙ୍କର ରକ୍ତ, ତାଙ୍କର ଗୋତ୍ରରୁ ଜନ୍ମନେଇ ସାମୁଏଲ ସାହୁ ହିନ୍ଦୁ ମଣିଷର କର୍ମକୁ ଭୁଲିନାହିଁ ।

ସାମୁଏଲ ସାହୁ ପ୍ରଥମେ ଆରମ୍ଭ କଲା—ପଚାରିଲା, ଗୁଲବୀକୁ ତ କାହିଁ ଦେଖୁ ନାହିଁ ?

ଗୁଲବୀ କଣ ଘରେ ଥାଏ ଭାଇ ? ଏବେ ତାର ବାଡ଼ ଫିଟି ପଡ଼ିଛି । ଦିନ ପାଞ୍ଚଟାରୁ ଯାଇ ରାତି ଅଧରେ ଫେରୁଛି । ବାହାଘର ଖଟୁଛି—ବରୁଆର କର୍ମରେ ଏଇଆ ଲେଖାଥିଲା ।

ଆଉ ଦୁଲରୀ ?

ସେଇଟି ଯାହା ମଙ୍ଗଳା ଭଲ । ଦୁଃଖ କଣ ଜାଣିଲା ନାହିଁ । ଭଲକି ଭଲ ବେଶ ହୋଇ ଉଦଣ୍ଡୀ ସାଜିଛି । ବାପ ଥିଲେ

ଆକଟ କରନ୍ତୁ—ତୁମେ ତ ଭାଇ ଏବେ ଆଉ ଆଗ ଭଳି ଆସୁନାହଁ—ଲଗାମ ନଥିବା ଟଟ୍ଟୁ ଭଳି ଏପଟ ସେପଟ ସେ ହେଉଛି । ଭଗବାନ ତାକୁ କେବେ ସୁବୁଦ୍ଧି ଦେବେ କେଜାଣି ? ଘରମୁହାଁ ହେଲେଯାଇ ମଥା ତଳକୁ ଲଇଁବ ନା କଣ ?

ପିଲଲୋକ ସେ ବଟେଙ୍ଗି ! ପିଲ ଅବସ୍ଥାରେ ସମସ୍ତେ ସେଇପ୍ରା ହୁଅନ୍ତି । ଜୀବନ ପ୍ରବାହରେ ନାଲିଆ କାରଣ ଦେଖିଛନ୍ତି ସେମାନେ । ଝଡ଼ ଝଞ୍ଜା ଭିତରେ ବ୍ୟତିବ୍ୟସ୍ତ ହୋଇ ନାହାନ୍ତି । ବନ୍ୟଲତା ଭଗ ହାହାକାର ଶୁଣିଲେ ଜାଣିବେ—ଜୀବନ ଖାଲି ଗୋଲପ ପାଖୁଡ଼ା ଭଳି ନରମ ନୁହେଁ, କି ରଙ୍ଗୀନ ନୁହେଁ । ତାର ତଳକୁ ରହିଛି ଗୋଲପ ଡେମ୍ଫର କଣ୍ଟା ! ମନ ବୁଲିଗଲେ ଭୁଲମନ ପଥ ଖୋଜିବ—ବାହା ସାହା କରିଦେଲେ ଘରଜଞ୍ଜାଳ କାନ୍ଧେଇ ଲଇଁ ଲଇଁ ଗୁଲିବେ ।

କିନ୍ତୁ ତାହା କି ସମ୍ଭବ ସାମୁଏଲ ଭାଇ ! ବଡ଼ ଭଉଣୀ ଗୁଲବୀ ସେମିତି ରହିଛି—ସେ ନ ଛଟିଲେ ଯାଏ ଦୁଲବୀ ପାଇଁ କି ସୁବିଧା ହେବ ?

ତୁ ସେଥିକି ଭାବନା କରନା ବଟେଙ୍ଗି ! ଗୁଲବୀ ପାଇଁ ବର ମୁଁ ଠିକଣା କରିଛି—ଭାବୁଛି ଅଳ୍ପଦିନ ଭିତରେ ବାହାଘରଟା ଉଠାଇ ଦେବା !

ସାମୁଏଲ ଭାଇ ! ସତରେ ତମେ ଗୁଲବୀ ପାଇଁ ପାତ୍ର ଖୋଜିଛ ? ମୁଁ ବହୁତ ଖୁସି ଭାଇ ! ଏ ଖୁସି ବେଳାରେ ଗୁରୁଆ ଖାଲି ମନେ ପଡ଼ୁଛି । ସେ ଏଇଠି ଥିଲେ କେତେ ଖୁସି ହୁଅନ୍ତା ! କିନ୍ତୁ ସେ ଯେ ଆସିବାକୁ ଅନେକ ଡେରି ! କିନ୍ତୁ ଏବେ ଖାଲି ତାର ମୁହଁ ଆଖି ଆଗରେ ନାଚୁଛି—ମନ କହୁଛି ହେଇ ସେ ଫେରି ଆସିଲା ।

ତୁ ଦମ୍ଭଧର ବଉଣି ! ଗୁରୁଆ ଅଳ୍ପଦିନରେ ଫେରି ଆସିବ । ସୁନ୍ଦରଗଡ଼ ଜେଲରୁ ସମ୍ବଲପୁରକୁ ବଦଳି ହୋଇଛି । ସେଠାକାର ଅଫିସର କୁଆଡ଼େ ଖୁବ୍ ଭଲ ! ଆଉ ବରଷ ଗୋଟାକର କଥାତ ! ଭାଗ୍ୟରେ ଥିଲେ ତା ଆଗରୁ ବ ଛୁଟି ମିଳିବ ।

ତଥାପି ସାମୁଏଲ ଭାଇ ! ତମେ ଟିକିଏ ନଜର ରଖିଥା । ଖବର ଅନ୍ତର ନିଅ ! କେବେ ଫେରୁଛି ଚିଠି ଲେଖ ! କିନ୍ତୁ ମୋ ମନ କହୁଛି ହେଇ ସେ ଫେରି ଆସିଲା ।

ସାମୁଏଲ ସାହୁ ପକେଟ ଭିତରୁ ଲଫାପା କାଢି ଚିଠି ଲେଖି ବସିଲା । ନିଜର ସଂସାର କଥାରୁ ଗୁଡ଼ାଏ ଲେଖି ବଉଣି ଯାହା କହିଲା ଲେଖିଲା । ଆଶୀର୍ବାଦ ଦେଇ ଚିଠି ବନ୍ଦ କଲା । ରାତି ଡାକରେ ଚାଲିଯିବ ବୋଲି ତରତର ହୋଇ ଉଠି ଛିଡ଼ା ହେଲା ।

ସାମୁଏଲ ସାହୁ ଚାଲି ଯିବାପରେ ବଉଣି ଆକାଶର ଚନ୍ଦ୍ରକୁ ହାତଯୋଡ଼ି କହିଲା, ଚନ୍ଦ୍ର ଦେବତା ! ମୋର ମନର ଦେବତାକୁ ଶୀଘ୍ର ଫେରାଇ ଆଣ ! ସଂସାରକୁ ମୋର ସବଳ କର ।

ବହୁତ ବାହାରୁ ରାଉରକେଲା ଆଲୁଅ ଦପ୍‌ଦପ୍ ହୋଇ ଦିଶୁଥାଏ । ସେ ଆଲୁଅରେ ଖଣ୍ଡ ମଣ୍ଡଳ ଯାକ ଉଜ୍ଜ୍ୱଳ ଦେଖାଯାଉଥାଏ । ମନେ ହେଉଥାଏ ସେ ଅଞ୍ଚଳ ସାରାରେ ସତେ କିବା ଦୀପାବଳୀ ଉତ୍ସବ ହୋଇଛି । ଆଲୋକ ନଗରୀ ରାଉରକେଲା ଆଗନ୍ତୁକ ମନରେ ଇନ୍ଦ୍ରଜାଲ ସୃଷ୍ଟି କରୁଥାଏ ।

ଗୁରୁଆ ଓରାଁଉର ମନ ବ୍ୟସ୍ତ ହୋଇ ଉଠୁଥାଏ—ଯେତେ ଆଗେଇଲେ ବି ରାଉରକେଲା ଦୂରେଇ ଦୂରେଇ ଯାଉଛି—ରୂପ କଥାର

ଘଞ୍ଚଙ୍କେମା ପଦ୍ମଫୁଲ ତୋଳିଲା ଭଳି ! କିଏ ଜାଣେ ଏରଙ୍ଗ ତର୍ଗ ସବୁ ମେଳା ମହୋତ୍ସବ କରୁଥିବା ବେଳେ ରେଲଗାଡ଼ିରେ ଏହି ମର୍ତ୍ତ୍ୟ ମ.ନବର କୋଳାହଳ ଦେଖି ହସି ହସି ଯାଉଛନ୍ତି ।

ଗୁରୁଆ ଓଝାଂ ଡବା ଭିତରୁ ମୁହଁ ଗଳାଇ ଦେଖିଲା ରେଲଗାଡ଼ି ପଦ୍ମପୋଖରୀ କଡ଼େ କଡ଼େ ଗୁଲିଛି । ଓହଳଝୁଲା ବୁଢ଼ା ବରଗଛ କାଳିମିଟିଆ ଅନ୍ଧାର ଭିତରେ ଶୋଇଯାଇଛି । ବୁଢ଼ା ବୁଢ଼ୀଙ୍କ ଆ ବଣ ଜଙ୍ଗଲର କଣ୍ଟାକୋଇଲି ନାଳ ମଉଳା ହୋଇ ଅନାଉଛି ।

ଏହି ତାର ଅତି ପରିଚିତ ଖଡ଼ଗପୁର—ଏଇଟି ସେ ଜନ୍ମ ହୋଇ ସୂର୍ଯ୍ୟର ପ୍ରଥମ କିରଣ ଦେଖିଥିଲା । ତାର ବାଲ୍ୟ ଓ ଯୌବନର ମଧୁର ମୁହୂର୍ତ୍ତକୁ ରୂପ ଦେଇଥିଲା ଏହି ଖଡ଼ଗପୁରର ସ୍ନେହଶୀଳା ଧୂଳିମାଟି ଓ ସୋହାଗ ସୁଗନ୍ଧଭରା ପବନ ।

ଡବା ଭିତରେ କୋଳାହଳ କ୍ରମେ ବୃଦ୍ଧି ପାଉଥିଲା । ଏଇଟି କଲିକତା ପାସେଞ୍ଜରର ଅନେକ ଯାତ୍ରୀ ଓହ୍ଲାଇବେ ; କୋମ୍ପାନୀ ଗୁକିରୀ ପାଇଁ ଓଡ଼ିଶାର ପ୍ରାୟ ପ୍ରତ୍ୟେକ କୋଣରୁ ଅନେକ ଲୋକ ଗୁଣିହୋଇ ଆସିଛନ୍ତି । କୋମ୍ପାନୀର ମୋଟା ଦରମା ପ୍ରତି ବଡ଼ ବଡ଼ଆଙ୍କର ସବୁଠୁ ବଳି ଲୋଭ ! ଟିକିଏ ଅଧିକା ଖାଟେଣୀ, ଟିକିଏ ଅଧିକା ଖୋସାମଦରେ ପାରଦର୍ଶିତା ଥିଲେ, ଆଖିବୁଜି ବୁଜି ପ୍ରମୋଶନ ଥୁଆ ! ଏ ଅପୂର୍ବ ସୁଯୋଗ ଗୁଡ଼ୁଛି କିଏ ?

ଗୁରୁଆ ଓଝାଂ ଗଣ୍ଠିଲିଟିକୁ କାଖ ଭିତରେ ଗୁପି ଗୁହିଁଲା ଆଗର ଖଡ଼ଗପୁର ଷ୍ଟେସନରେ ଗାଡ଼ି ଅଟକୁ ନାହିଁ—ସେ ଖାଲି ଆଶ୍ଚର୍ଯ୍ୟ ହୋଇ ଅନାଇଁ ଥାଏ । ଖାଡ଼ଯାଇ 'ମହୁଲ ପାଲି' ନାଳପାଖରେ ଦମ୍ ନେଲା ।

ଇଏ କଣ ଖଡ଼ଗପୁର ଷ୍ଟେସନ ? ଅଣନିଶ୍ୱାସୀ ହୋଇ ଓହ୍ଲାଉଥିବା ଯାତ୍ରୀ ଜଣକୁ ପଚାରିଲା ଗୁରୁଆ-ଓଝାଂ ।

ହଁ ଇଏ ରାଉରକେଲା । ନୂଆହୋଇ ଆସିଛୁ କି ? ବୁଝି ହୁସିଆର ଥିବୁ । ଆଖି ମିଟିକାରେ ବଣ୍ଟିକି ଗୋଲ ହୋଇଯିବ— ମୋଟର, ଟ୍ରକ୍ ତଳତଳେ ପଡ଼ି ପିଚକା ହୋଇଯିବୁ । କୁଆଡ଼କି ଯିବୁ କହଲୁ—ଟାଉନ୍‌ସିପ୍ ନା ପ୍ଲାଣ୍ଟ ଏରିଆ ?

ରାଉରକେଲା ଯିବ ଭାଇ ! ସେଇଠି ମୋର ସ୍ତ୍ରୀ, ଝିଅ— ଆହୁରି କେତେ ଲୋକ ଅଛନ୍ତି !

କଣ ସରକାରୀ କ୍ୱାଟର ମିଳିଛି ? କେଉଁ ସ୍କୁନିଟ୍‌ରେ ?

ସରକାରୀ କ୍ୱାଟର ! କାହିଁ ନାଁ ତ ! ଏଇଠି ମୋ ନିଜ ଘର ! ଜମି, ବାଡ଼ି, ବିଲ, ବଗିଚ ସବୁ ଅଛି । ମୋର ସାତ ପୁରୁଷର ଭିହ ସେ । ମୁଁ କଣ ଆଜି ନୂଆ ?

ମନେ ହେଉଛି ପୁରୁଣା ରାଉରକେଲାର ଲୋକ ତୁ ! ଆଜି କଣ ସେ ପୁରୁଣା ରାଉରକେଲା ଅଛି ନାଁ ପୁରୁଣା ରାଉରକେଲାର ଲୋକ ଅଛନ୍ତି—ସବୁ ନୂଆ । ରାସ୍ତା, ଗଳି, ଦୋକାନ, ବଜାର ନୂଆ ହୋଇ ବସିଛି । ତୁ ପୁରୁଣା ଲୋକ ନୂଆ ସହରରେ ବାଟ ପାଇବୁ ନାହିଁ ।

ମୁଁ ବାଟ ପାଇବ ନାହିଁ ? ଏଇଠି ମୋର ଜନ୍ମ । ରାସ୍ତାଘାଟ, କୂଅ ପୋଖରୀ, ଗଛବୃକ୍ଷ ସବୁ ମୋର ଚିହ୍ନା ! ଧୂଳି ଉପରେ ମୋର ପାଦଚିହ୍ନ ଏବେ ବି ଲିଭି ନଥିବ—ଆଖି ବନ୍ଦ କରିଦେଲେ ମୁଁ କାଣ୍ଟ ହେଲେ ଚାଲି ପାରିବ ନାହିଁ । ବର୍ଷ ପାଞ୍ଚଟା ଭିତରେ ଏମିତି କଣ ପରିବର୍ତ୍ତନ ହୋଇଗଲା ?

ବର୍ଷ ପାଞ୍ଚଟା କଣ ଏଇଟି ପଡ଼ିଛି ? ଘଣ୍ଟାକର ତଫାତ୍ ଭିତରେ ଦୁନିଆ ବଦଳି ଯାଉଛି—ଆଜିର କଥା କାଲିକି ରହୁନାହିଁ, ଆଉ ତୁ କହୁଛୁ ବର୍ଷ ପାଞ୍ଚଟାର ପରିବର୍ତ୍ତନ କଥା ? ଗଲେ ଦେଖିବୁ ନାହିଁକି ? ସାଥି ପଥିକ ବାଟହିଁ ଚାଲିଗଲା ।

ଗୁରୁଆ ଓ ବସ୍ତ ଗାଡ଼ିରୁ ଓହ୍ଲାଇ ଯାହା ଦେଖିଲା ନିଜ ଆଖିକୁ ନିଜେ ବିଶ୍ୱାସ କରିପାରିଲା ନାହିଁ । ରାଉରକେଲା ଷ୍ଟେସନରେ ଓହ୍ଲାଇ ପଡ଼ିଲେ ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନ ଥିଲା—ଅଥଚ ଏବେ ତିଆରି ହୋଇଛି ବିରାଟ ବିଶ୍ରାମ ଘର ! ମାଇଲିଏ ଲମ୍ବର ପ୍ଲାଟ୍‌ଫର୍ମ ସିମେଣ୍ଟ ବୋଳାହୋଇ ଦୁରସ୍ତ ହୋଇଛି । ଆଗେ ଜଣେ ଦି'ଜଣ ଓହ୍ଲାଇଲେ ବଡ଼କଥା ହେଉଥିଲା, ଏବେ ଶହ ଶହ ଲୋକଙ୍କର ଯାତାୟାତରେ କାନ ଭାଁ ଭାଁ ଶୁଭୁଛି । ଦେଶୀ ବିଦେଶୀ ମିଶା ଅସଂଖ୍ୟ ଲୋକଙ୍କ ସମାଗମ ଏଇଠି । ଭଲିକି ଭଲି ବେଶ ପୋଷାକ, ଜଣ ଜଣକୁ ଗୋଟିଏ ଗୋଟିଏ ଭାଷା, ଅଦ୍ଭୁତ ଫେସନ, ଅଦେଖା ଅଜଣା ଲୋକର ବିରାଟ ପ୍ରଦର୍ଶନୀ ।

ଜର୍ମାନ ତରୁଣ ତରୁଣୀ ହାତ ଛନ୍ଦା ଛନ୍ଦି ହୋଇ ଚାଲିଛନ୍ତି । ନବ ବିବାହିତ ବଙ୍ଗାଳୀ ଦମ୍ପତି ମନଖୋଲିଆ ହସରେ ଆକାଶ ଫଟାଇ ଦେଉଛନ୍ତି । ତରୁଣ ଓଡ଼ିଆ ଅଫିସର, ତରୁଣୀ ନର୍ଷ୍ଟମାନଙ୍କ ସାଙ୍ଗରେ କରମର୍ଦ୍ଦନ କରି ଶୁଭେଚ୍ଛା ଜ୍ଞାପନ କରୁଛି—ଏ ସବୁ ଏଇଠି କେବେହେଲେ ନଥିଲା ।

ତୋଫା ବିଜୁଳି ଆଲୁଅ ଲହଡ଼ି ଭାଙ୍ଗୁଛି ରାଉରକେଲା ମାଟିରେ । ସେ ଆଲୁଅ ତେଜରେ ଠିକ ଠିକ ଧୂଳିକଣା ବି ଗଣି ହୋଇଯିବ—ଭିକାରିମାନେ ଭିଡ଼ ଜମାଇ ଦେଉଛନ୍ତି ବିଶ୍ରାମ ଘରର ଚତୁର୍ଦ୍ଦିଗରେ—ହକର ପାଟିକରି ସମ୍ବାଦ ବିକୁଛି—ଏସବୁ ଅତ୍ୟନ୍ତ ନୂଆ ।

ପ୍ଲାଟ୍‌ଫର୍ମର ଦୁଇ ସୀମାନ୍ତରେ ବଡ ବଡ଼ ସିମେଣ୍ଟ ବୋର୍ଡରେ ତିନୋଟି ଭାଷାରେ ଲେଖା ହୋଇଛି 'ରାଉରକେଲା' ! ପ୍ରାଟଫର୍ମ ଉପରେ ମସ୍ତବଡ଼ ବିଜୁଳି ବତୀ ଜଳୁଛି । ଗୁରୁଆ ଓ ବସ୍ତ ଚକିତ ଆଖିରେ ସେ ଲାଇଟକୁ ଅନାଇ ଅନାଇ ହାତ ଯୋଡ଼ି ନମସ୍କାର କଲା ।

ତାର ପ୍ରଶ୍ନବାଚୀ ଆଖିରେ ଥିଲା ଗୋଟିଏ ଅପରିଚିତ ଆଗନ୍ତୁକର ସନ୍ଦେହ ଓ ଭୟ ମିଶା ବାର୍ତ୍ତା । ସେ ଏହି ନୂତନ ରାଉରକେଲାକୁ ସ୍ୱାଗତ କରୁଥିଲା କି ଘୃଣା କରୁଥିଲା ସହଜରେ ଜାଣିହେଲା ନାହିଁ ।

ଗୁରୁଆ ଓ ସ୍ୱାଂ ଆଗୁଆ ଯାତ୍ରୀଙ୍କର ପଦାଙ୍କ ଅନୁସରଣ କରି ପ୍ଲାଟଫର୍ମ ପାରିହେଲେ । ବାହାରେ ଟାକ୍ସି, ରିକ୍ସାର ଅସମ୍ଭବ ସମାବେଶ । ଅଥଚ ଟାକ୍ସି କଥା ଦୂରର ଥାଉ ରିକ୍ସାଟାଏ ଦେଖିଲେ ସମଗ୍ର ଏକୁଟିଆ ରାଉରକେଲା ଉପ୍ରେ ଙ୍କ ଆଖିରେ ଅନାଉଥିଲା ।

କେଉଁଠିକି ଯିବ ଏବେ ? ଯୁଆଡ଼େ ଦେଖିଲେ ନୂଆ ନୂଆ ଲାଗୁଛି । ବାଟପାଇ ହେଉନାହିଁ । ଗୁରୁଆ ଓ ସ୍ୱାଂ ଆଶ୍ଚର୍ଯ୍ୟ ହୋଇ ଛିଡ଼ା ହୋଇଛି । ଟ୍ରକ୍‌ଟିଏ ଧୂଳି ଉଡ଼ାଇ ଚାଲିଗଲା । ପଞ୍ଜାବୀ ଡ୍ରାଇଭର ମଦଖାଇ, ଆଖିବୁଜା ସ୍ପିଡ୍ ଦେଇଛି । ରାସ୍ତା ଉପରର ଲୋକଙ୍କୁ ଖାତିର କରୁନାହିଁ—ଟ୍ରକ ଚକ ତଳେ ପଡ଼ି ବିରାଡ଼ିଟିଏ ଆଖି ମିଟିକାରେ ଚୂନା ହୋଇଗଲା ।

ଗୁରୁଆ ଓ ସ୍ୱାଂ ଚୁ ଚୁ କରି ବିରାଡ଼ି ପାଖକୁ ଧାଇଁଗଲା । ଚଲାପଥର ଲୋକ କେଇଟି ଗୁରୁଆ ଓ ସ୍ୱାଂକୁ ଓ ମଲା ବିରାଡ଼ିଟିକୁ ଅସ୍ୱାଭାବିକ ଆଖିରେ ଚାହିଁଲେ । ତାପରେ ବିଦ୍ରୂପର ହସ ହସି କହିଲେ, ବିରାଡ଼ିଟିଏ ଟ୍ରକ୍ ଚକତଳେ ଚୂପିହେଲା, ତାକୁ ଦେଖି ଚୁ ଚୁ କରୁଛୁ ? ଏଟା ପରା ରାଉରକେଲା ? ଯେଉଁଠି ବିରାଡ଼ି ପାଖରେ ବସି ଚୁ ଚୁ କରୁଥିବୁ ଆଉ ଗୋଟିଏ ଟ୍ରକ୍ ଆସି ତୋ ଉପରେ ମଡ଼ିଯିବ । ବିରାଡ଼ି ସଙ୍ଗରେ ମଡ଼ାହେଲେ ସହାନୁଭୂତି ଟିକକ ସରିଯିବ ଯେ ।

ହଁ—ରାଉରକେଲା ଏମିତି ?

ଆଉ କଣ ବୋଲି ବୁଝିଥିଲୁ କି ? ଜଣେ ଅପରିଚିତ ଆଗନ୍ତୁକ କହୁଥାଏ । ଯେଉଁଠି ମଣିଷର ମୂଲ୍ୟ ନାହିଁ—ବିଲେଇ, କୁକୁର କଥା ପଚାରେ କିଏ ?

ଗୃରୁଆ ଓରାଂ ଦୀର୍ଘ ନିଶ୍ୱାସ ନେଲ । କହିଲ ଯେଉଁଠି ମଣିଷର ମୂଲ୍ୟ ନାହିଁ, ସେଇଠି ବଞ୍ଚିରହି କି ଲଭ ?

ସାମୁଏଲ୍ ସାହୁ ଷ୍ଟେସନରେ ଖଟି ଗଲାଇ ଗୁଲ୍‌ବାର ସିଦ୍ଧା ପଡ଼କୁ ସଙ୍ଗରେ ନେଇ ଫେରୁଥାଏ । ଲୋକ ଗହଳି ଦେଖି ଅଟକିଯାଇ ଘଟଣା ସ୍ଥାନକୁ ପାଦ ବଢ଼ାଇଲେ ।

ତୋ ଘର କେଉଁଠି କହରେ ? ଲୋକ ଗହଳିରେ ଜଣେ ପଗୃରୁଥାଏ ।

କେତେ ଲୋକଙ୍କୁ କହିବ ମୋ ଘର ଏଇଠି ବୋଲି । ତମେ ସାତ ପୁରୁଷର ଜନମ ମାଟି ଇଏ କଣ ବିଶ୍ୱାସ ହେଉ ନାହିଁ ?

ଖଡ଼ଗପୁର ମାଟିରେ ଇଏତ ଗୋଟିଏ ଅଦ୍ଭୁତ ଜୀବ ଦେଖାଗଲ । ବାଳେଇ କୁକୁର ଜୀବନ ପ୍ରତି ଅଦ୍ଭୁତ ମାୟା ଦେଖୁଛି —ତୋ ନାଁ କଣ କହରେ ? ଜଣେ ପଗୃରିଲ ।

ମୋ ନାଁ ପଗୃରୁଛ ? ମୋ ନାଁ ଗୃରୁଆ ଓରାଂ । ହେଲା ଏଥର ?

ଗୃରୁଆ ଓରାଂ ? ସାମୁଏଲ୍ ସାହୁ ଉଦ୍‌ବିଗ୍ନ ହୋଇ ଧାଇଁଲେ ।

ଅଦ୍ଭୁତ ନାଁଟିଏତ ! ଏ ଖଡ଼ଗପୁରରେ ଅନେକ ଦିନ ରହିଲି । କିନ୍ତୁ ତୋତେ ତ ଦେଖିଲି ଭଳି ମୋତେ ମନେ ପଡୁନାହିଁ । ଖଡ଼ଗପୁରର ପ୍ରତ୍ୟେକ ଗଳିକନ୍ଦି ମୋ ଚିହ୍ନା ! ପ୍ରାୟ ପ୍ରତ୍ୟେକ ଲୋକଙ୍କୁ ଚିହ୍ନିଛି । ତୁ କହୁଛୁ ଏ ଖଡ଼ଗପୁରରେ ତୋ ଘର ! ଅଥଚ ଚିହ୍ନିଲି ଭଳି କି ଦେଖିଲି ଭଳି ତ ମନେ ପଡୁନାହିଁ । ଅପରିଚିତ ଲୋକଟିଏ ପଗୃରୁଥିଲେ ।

ଗୃରୁଆ ଓରାଂ ହସିଲା । ସେ ହସରେ ଅନେକ ଶ୍ଳେଷ, ଅନେକ ବ୍ୟଙ୍ଗ ଭରି ରହିଥାଏ । ତାପରେ ନୀରବ ହୋଇ କହିଲା, ଚିହ୍ନିପାରୁନା ବାବୁ ? ହଁ କେମିତି ଚିହ୍ନିବ ତୁମେ ? ଚିହ୍ନାଲୋକ ହେଲେ ସିନା ଚିହ୍ନିପାରିଥାନ୍ତ ? ତୁମେ ଯେ ଏକାବେଳକେ

ନୂଆ ଏ ମାଟିରେ—ଏଇଠି ଏଇ ବର୍ଷକେଇଟାର ଜୀବ ତମେ, କିନ୍ତୁ ମୁଁ ଅନେକ ଦିନର । ରାଉରକେଲାର ଆୟୁଷଠାରୁ ମୋର ସବାସାନ ସନ୍ତାନର ବୟସ ଅନେକ ବେଶି ! ଏଇ ଗୃହ ପାଞ୍ଚବର୍ଷ ତଳେ ଏଇଟି ନଥିଲା ବାବୁ ! ସେଥିପାଇଁ ସମସ୍ତଙ୍କୁ ନୂଆ ଲାଗୁଛୁ । ପୁରୁଣା ରାଉରକେଲାର ପୁଅ, ସଞ୍ଜହେଲେ ଅଗଣା ଅତିଥିକୁ ଗାଁରୁ ନଗ୍ରହି ଅଭ୍ୟର୍ଥନା କରି ଘରେ ରଖୁଥିଲା—ବନଦେବତାର ସନ୍ତୋଷ ପାଇଁ ପ୍ରତ୍ୟେକ ଜୀବଧାରୀ ପିଣ୍ଡକୁ ସମ୍ମାନ ଦେଖାଉଥିଲା —ଅଥଚ ଆଜି ଦେଖୁଛୁ ସେହି ମାଟିରେ ହୋଇଛୁ ବିରାଟ ପରିବର୍ତ୍ତନ । ମଣିଷ ମଣିଷକୁ ପରୁଚୁନାହିଁ । ତାଚ୍ଛଲ୍ୟ କରୁଛି— ଉପହାସ କରୁଛି । ବଡ଼ ପ୍ରାଣତ ଦୂରର କଥା ମଣିଷ ପ୍ରାଣକୁ ବି ଆଦର ମଣିଷ ସମ୍ମାନ ଦେଇ ଶିଖି ନାହିଁ ।

ଅତିଥି, ଅଭ୍ୟର୍ଥନା, ବନଦେବତା ଏସବୁତ ନୂଆ ଶବ୍ଦ ରାଉରକେଲାର । ଇଏତ ଆଉ କପୋଳକଳ୍ପିତ ଗଳ୍ପଶୁଣାଉ ନାହିଁ —ଆଉ ଜଣେ ପଚାରୁଥିଲା—ତୁ କେଣେ ସତ କହୁଛୁ ?

ଗୁରୁଆ ଓରାଂ ସବୁବେଳେ ସତ କହେ । ସେ ଜୀବନରେ ଥରେ ହେଲେ ଭୁଲରେ ସୁଦ୍ଧା ମିଛ କହିନାହିଁ—ସତ ଆଗରେ ସେ ଫାଶୀ ଜେଲକୁ ବି ଡ଼ରିନାହିଁ । ସତ କହି ଜେଲ୍ ଯାଇଥିଲା । ଜେଲରୁ ଫେରି ମିଛ କହିବ ?

ଆରେ ଜେଲ ଫେରନ୍ତା ଦାଗୀଟିଏରେ—ଚୋର ହୋଇ ଥିବ । ପୋଲିସକୁ ଖବର କର··· ଜମାହୋଇ ଥିବା ଲୋକେ ଘାଁ ଘାଁ ହେଲେ ।

କିଏ କହେ ଗୁରୁଆ ଓରାଂ ଦାଗୀ ? ଜେଲଗଲେ ଯଦି ଲୋକେ ଚୋର ହୁଅନ୍ତି, ତେବେ ଏ ଦେଶର ସମସ୍ତ ଗଣ୍ୟମାନ୍ୟ ବ୍ୟକ୍ତି ତାହିଁ ହୋଇଥାନ୍ତେ । ଛାଡପାଇଁ ଜେଲ ବରଣ କରି ଆତ୍ମତ୍ୟାଗର ପ୍ରମାଣ ଦେଇଲେ ବୋଲି ସେମାନେ ହେଲେ ମନ୍ତ୍ରୀ,

ନେତା—ଆଉ ଗୁରୁଆ ଓରାଂ ଜାତପାଇଁ ସତ କହି ଜେଲ ବରଣ କଲାବେଳେ ତାକୁ ତମେ ଦାଗୀ କହୁଛ, ଚୋର କହୁଛ ? ବେକରେ ତାର ଫୁଲମାଳ ପଡ଼ିଥିଲେ ଗୋଉଧ୍ବନି ନେଇ ସ୍ବାଗତ କରିଥାନ୍ତ । ଯେଉଁ ମାଟିରେ ତମେ ବଡ଼ଲୋକର ନିଶ୍ବାସ ନେଇ ଏକଥା କହି ପାରିଲ—ତମେ ଜାଣ ସେ ମାଟି କାହାର ? ସାମୁଏଲ ସାହୁ ଝଡ଼ବେଗରେ ଗୁରୁଆ ଓରାଂ ପାଖକୁ ଲାଗିଆସି ଆଲିଙ୍ଗନ କଲା । ଦୁହିଁଙ୍କ ଆଖିର ଲୁହରେ ଗୁଡ଼ [illegible] ଯାଉଥିଲା । କିଛିକ୍ଷଣ ନୀରବତା ପରେ ଗୁରୁଆ କାନ୍ଧେଇ [illegible] ଚି- ଚିଖି କହିଲା, ତୁ ଏମାନଙ୍କୁ କ୍ଷମା ଦେଇଦେ ଗୁରୁଆ ! ରାଉରକେଲାର ଶସ୍ତା ଟଙ୍କା ଏମାନଙ୍କୁ ଉପରମୁହାଁ କରି ପକାଇଛି । ମଣିଷ ମନର ମମତା ହରାଇ ଏମାନେ ବଣର ପଶୁ ପାଲଟି ଗଲେଣି ।

ସାମୁଏଲ ସାହୁ ! ଯାହାକୁ ରାଉରକେଲା ନେତାଙ୍କ ସମ୍ମାନ ଦିଏ, ବଡ଼ ଅଫିସର ହାତଯୋଡ଼ି ସ୍ବାଗତ କରେ, ଦୋକାନୀ ବ୍ୟବସାୟୀ ହସହସ ମୁହଁରେ ସମ୍ବର୍ଦ୍ଧନା ଜ୍ଞାପନ କରନ୍ତି, କୁଲି ମଜୁରିଆ ନିଜ ଲୋକଭଳି ଆଦର କରି ଆନନ୍ଦ ପାଆନ୍ତି—ସେହି ସାମୁଏଲ ସାହୁ ଗୁରୁଆ ଓରାଂକୁ ଛାତିରେ ଲଗାଉଥିବା ଦେଖି ଜମା ହୋଇଥିବା ଲୋକମାନେ ଦୋଷୀଭଳି ବାଟ ଛାଡ଼ିଦେଲେ । କେତେଜଣ ଉତ୍ସୁକ ବାଂକ୍ର ଓଲଟି ଓଲଟି ଗୁହ ଗୁରୁଆ ଓରାଂର ମୁହଁକୁ ଭଲଭାବରେ ଚିହ୍ନି ନେଉଥିଲେ ।

ଏଇ ଚୋର ହବା ଶ୍ବଶୁର ଭୀମ ! ପାଦଧୂଳି ନେ ! ସାମୁଏଲ ସାହୁ ଗୁରୁଆ ଓରାଂର ହବା ଜାମାତାକୁ ନିର୍ଦ୍ଦେଶ ଦେଲା ।

ଛବିଶ [ସତେଇଶ] ବର୍ଷର ସୌମ୍ୟଦର୍ଶନ, ହୃଷ୍ଟପୁଷ୍ଟ ଯୁବକଟିଏ ଗୁରୁଆ ପାଦରେ ମଥା ଲଗାଇଲା ।

ଗୁରୁଆ ବସ୍ତିର ଆଙ୍ଗନରେ ଏହି ଅପରିଚିତ ଅଥଚ ଶାନ୍ତ ଯୁବ ... ଆଗ୍ରହୀ ହୋଇ ଅନାଇ ରହିଥାଏ ।

...କୁ ମୁଁ ଖୋଜିବା ପାଇଁ ଠିକଣା କରିଛି ରେ ଗୁରୁଆ ! ଆଜ ... ... ମଙ୍କୁ ସମ୍ମତି ପାଇବା ସକାଶେ ଚିଠି ଲେଖିଛି । କିନ୍ତୁ ବ୍ୟାପାର ବଡ଼ବଡ଼ ବିଧାନସଭାରେ ତ୍ତ ଆସି ଏଇଠି । ତାପରେ ଭୀମ ... ସନଙ୍କୁ କହିଲି ଗତ ଫେରୁଛିରେ ଭୀମ ! ଆଗେ ଦୋକାନ ବନ୍ଦ ... ଯା—ତାପରେ ବସା ପଚାରି ଗୁରୁଆ ବସାକୁ ଫେର...।

ଭୀମ ସେନ୍ ବାଧ୍ୟ ଭଳି ବିଦାୟ ନେଲା ।

ଗୁରୁଆ ଓ ବଂ ସଙ୍ଗରେ ସାମୁଏଲ୍ ସାହୁ ସଡ଼କ ପୋଲ୍ ଉପରେ ନୀରବରେ ବସିରହିଲେ । ସଡ଼କ ଉପରେ ଶନିବାର ... ଗହଳି ଅବିଶ୍ରାନ୍ତ ବଢ଼ି ଚାଲିଥାଏ । ମୋଟର ଟ୍ରକ୍ର କ... । ଆବାଜ ଦିଗ୍‌ବଳୟକୁ ମୁଖର କରି ରଖିଥାଏ । ଆଦିବାସୀ ଝିଅମାନେ କାନ୍ଧରେ କାନ୍ଧ ମିଶାଇ ଶସ୍ତା ହିନ୍ଦିସଙ୍ଗୀତ ଆ... ବେପରୁଆ ଭାବରେ ଆଗେଇ ଚାଲୁଥାଆନ୍ତି ।

ଆଜି ଅଗଷ୍ଟ ଚଉଦରେ ଗୁରୁଆ । ମନେ ଅଛି ? ସାମୁଏଲ୍ ସାହୁ ପଚାରିଲେ ।

ସବୁ ମନେ ଅଛି ମୋର—ଆଜିକି ଚାରି ବର୍ଷ ପୂର୍ବେ ଏଇ ଜାଗା, ଏଇ ସଂସାର ଛାଡ଼ି ଜେଲ୍ ଭୋଗିବାକୁ ସରକାରୀ ଗାଡ଼ିରେ ସୁନ୍ଦରଗଡ଼ ଯାଇଥିଲି । ଅଗଷ୍ଟ ଚଉଦର ଉତ୍ସବ ଦେଖିବାରୁ ବଞ୍ଚିତ ହୋଇଥିଲି । ଦୀର୍ଘ ପାଞ୍ଚ ବର୍ଷ ପରେ ଫେରିଛି । ମୋ ପିଲାକୁଟୁମ୍ବ ବର୍ତ୍ତମାନ କେମିତି ଅଛନ୍ତି ସାମୁଏଲ୍ ଭାଇ ? ବିରଙ୍ଗ, ଗୁଲାବୀ ଓ ଦୁଲାରୀର ଖବର କଣ ? ସେମାନେ ସବୁ ପ୍ରାଣରେ ଅଛନ୍ତି ? ତାର ଖବର କଣ ?

ସବୁ ଭଲରେ ଗୃରୁଆ ! ବରିଙ୍ଗ ତୋତେ ଅନାଇ ବସିଛୁ । ତୋର ଗଲାଦିନୁ ଖାଲି ଦିନ ଗଣୁଛୁ । ଗୁଲବୀ ଦୁଲବୀ ଆନନ୍ଦରେ ଅଛନ୍ତି । କିନ୍ତୁ ତୋର ଗାଁଆ ଆଉ ନାହିଁ । ପାଖ ଆଖ ଚକଡ଼ାପାଙ୍କର ଗାଁ ସବୁ ଖାଲି ହୋଇ ଯାଇଛି । ସେଇଠି ନୂଆହୋଇ ନିର୍ମାଣ ହୋଇଛି ଏହି ଇସ୍ପାତ ନଗରୀ ରାଉରକେଲା ।

ଚକଡ଼ାପାଙ୍କର ସବୁଗାଁ ଉଠିଗଲା ? ଗୃରୁଆ ଭୟାର୍ତ୍ତ କଣ୍ଠରେ ପଚାରିଲା ।

ହଁ ଗୃରୁଆ ! କିଛି ରହିଲା ନାହିଁ । ତୋର ଖାଲି ଜେଲ ଭୋଗିବା ସାର ହେଲା । ସମସ୍ତଙ୍କୁ ଗୋଟିଏ ଜାଗାରେ, ପୂର୍ବଭଳି ଘର କରିଦେଇ ଥଇଥାନ କରିବାକୁ ଦାବୀକରି ଯେଉଁ ଆନ୍ଦୋଳନ ଚଳାଇଥିଲେ ସେ ସବୁ ଫସର ଫାଟିଗଲା । ସରକାର ଶୁଣିଲେ ନାହିଁକି ଗାଁଲୋକେ କରେଇ ଦେଲେ ନାହିଁ । ପଇସା ଲୋଭରେ ଢେଡ଼ ସବୁ ଛିନ୍ ଛତର ହୋଇଗଲେ । କିଏ କେଉଁଠି ଅଛନ୍ତି ପତ୍ତା ନାହିଁ । ତାପରେ ସାମ୍ୟେଲ ସାହୁ ଆଙ୍ଗୁଠି ଲମ୍ବାଇ ଟାଉନ୍ ସାଇଟ୍କୁ ନିର୍ଦ୍ଦେଶ କରି କହିଲା, ଏଇଯେଉଁ ବିଜୁଳି ଆଲୁଅ ଆଉ ଲୋକ ସମାଗମର ଅଦ୍ଭୁତ ଭିଡ଼ ଦେଖୁଛୁ ତା'ର ପାଦତଳେ ଗୋଟି ଜିହ୍ନ, ଦେଓଗାଁ, ଦୁର୍ଗାପୁର, ରଘୁନାଥ ପାଲି, ତର୍କେରା, ଭଙ୍ଗା ମୁଣ୍ଡା, ମିଲମିଲି, ରାଉରକେଲା ଝାରମୁଣ୍ଡା, ବଜୁବନ୍ଧ, ଝଙ୍କରପାଲି, ଝିଙ୍ଗବାହାଲ, ବରକାନି, ଦୁଡ଼ୁଭୁମ ଓ ମହୁଲ ପାଲି ଏହିଭଳି ପନ୍ଦର ଖଣ୍ଡ ଗାଁ ସମାଧି ନେଇଛି । ଆଉ ପାହାଡ଼ ଆରପାଖ ଡାଉନ୍ ସିପ୍ ତଳେ କଣ୍ଟାଜର, ଜଗଦା, ଝିର୍ପାଣି, ଖରଆବାହାଲ, ଦାଇପୋଷ, ଜୁମ୍କେଲା, ଲୁହାକେଡ଼ା, ଠେଲିଏଁଣ୍ଡା, ବନ୍ଧପୋଷ, ବାଙ୍କିଆ, ପ୍ରଧାନ ପାଲି, ଝୁରୁଣାପାଣି, ହମିଦ୍ପୁର, ସାନ୍ଲାଙ୍ଗ୍ ବେରନା, ଅନ୍ଧାରିବନ୍ଧ, ଉପରମା ବାହାଲ ଓ ଝରଆ ଘାଟି ଏହିଭଳି

ସତରଖଣ୍ଡ ଗାଁ ବିଲୀନ ହୋଇଗଲା । ସରକାରୀ କାଗଜପତ୍ରରେ ସେ ଗାଁର ଖବର ଯାଇ ରହିଲା । ଏବେ ଏ ଲୋକମାନେ ସେ ଗାଁ ମାନଙ୍କର କଥା ଶୁଣି ଅବିଶ୍ୱାସ କରୁଛନ୍ତି । ଆଉ କେତେଦିନ ପରେ ସମସ୍ତେ ଭୁଲି ଯିବେ ।

ଗାଁ ଛାଡ଼ି ପରିବାର ମୋର ରହିବେ କେଉଁଠି ? ଗୁରୁଆ ଓଠ ଆଖିରେ ଅଶ୍ରୁର ଝରଣା ବୋହୁଥିଲା । ଗାଁ ବାଲା ଅନେକ ଦୁଃଖୀ ହୋଇଥିବେ—ନୁହେଁ ?

ସେ କଥା ଆଉ କହ ନାହିଁରେ ଗୁରୁଆ ! ଯାହା ହୋଇଗଲେ ହୋଇଗଲେ, ଏବେ ବି କିଏ ଶାନ୍ତିରେ ଅଛନ୍ତି ? ଯେଉଁମାନେ ମାଟିର ମମତା ଛାଡ଼ି ନପାରି କାରବାର କି ମୂଲ ଲାଗି ପେଟ ପୋଷିବାକୁ ଆଗେଇ ଆସିଲେ, ସହରର ଅନ୍ତର ଭିତରେ ସେମାନେ ମଧ୍ୟ ସଂକଟ ପୂର୍ଣ୍ଣ ଦୁଃଖ ଭୋଗିଲେ । ସବୁଠି ପ୍ରତିଯୋଗିତା ଶୋଷଣ ଓ ସ୍ୱାର୍ଥପରତାର ସଂଘର୍ଷ । ଏ ଜାତି କେବେ ମଣିଷ ହୋଇ ନିଜଦାବୀ ହାସଲ କରି ପାରିବାର ଶକ୍ତି ପାଇବ କେଜାଣି ? ନିଜ ମାଟିରେ ବି ସେ ବିଦେଶୀ ସାଜୁଛି, ଭଲକା ହୋଇ ଅନେଇଛି—ଯିଏ ମାରିବାର କଥା ସେ ମାରି ନେଲେଣି ।

ଏଇଥିପାଇଁ ଗୋଟିଏ ଚିରସ୍ଥାୟୀ ବ୍ୟବସ୍ଥା କରାଯିବା ଉଚିତ ସାମୁଏଲ୍ ଭାଇ । କଣ କରିବା କହିଲ ?

ସାମୁଏଲ ସାହୁ ହସିଲା । କହିଲା, ଏହି ବ୍ୟବସ୍ଥା ଭିତରେ ପଚି ପାଞ୍ଚ ବର୍ଷର ସଜାପରେ ଫେରିଲୁ, ଦେହର ଝାଳ ମରି ନାହିଁ, ପୁଣି ଥରେ ନିଆଁକୁ ଗୋଡ଼ ବଢ଼ାଇଲୁଣି ? ଘରକୁ ଯାଇ କିଛିଦିନ ଦମ୍ ମାରି ଦେହର ଝାଳ ମାରିନେ—ତାପରେ ବୁଝିବା ।

ସାମୁଏଲ ସାହୁ ବାଟ କଢ଼ାଇ ଗୁରୁଆକୁ ତାହାର ବସା ଆଡ଼କୁ ନେଇଥିଲା ।

ଘୃରୁଣା ରାଉରକେଲା ମୋଡ଼ ଉପରେ ଜର୍ମାନ ତରୁଣଟିଏ ସାଥି ତରୁଣୀ ସଙ୍ଗରେ ବେପରୁଆ ଭାବରେ ଚାଲି ଯାଉଥାଏ । ତରୁଣୀଟିର ଅର୍ଦ୍ଧ ଉଲଗ୍ନ ବେଶ ଚଲି ପଥିକର ଦୃଷ୍ଟି ଆକର୍ଷଣ କରୁଥାଏ । ତାଙ୍କର ପଛେ ପଛେ ଗୋଟା ପିଲଟିକୁ ଠେଲା ଗାଡ଼ିରେ ବସାଇ ଠେଲି ଠେଲି ତାଙ୍କର ଅନୁଧାବନ କରୁଥାଏ ଗୋଟିଏ ଅଦ୍ଭୁତ ବାଳିକା । କଳା ଦେହରେ ଗୋରା ମାଇପୀ ପୋଷାକ ଅତି ଖାପ୍ ଛଡ଼ା ଦେଖା ଯାଉଥାଏ । ମୁହଁରେ ସ୍ନୋ, ଓଠରେ ଅତ୍ୟଧିକ ପ୍ରଲେପ ତାକୁ ଅତି ବିବର୍ଣ୍ଣିଆ କରି ଦେଉଥାଏ—ମନେ ହେଉଥାଏ ଏ ମସ୍ତକ ପରିଶୋଭିତ କାଳ କୃଷ୍ଣ କେଶଗୁଚ୍ଛକୁ ସେ ଅତି ନିର୍ମମ ଭାବରେ କାଟି ପକାଇଛି । ନଖରେ, ଓଠରେ, ଆବୁରଙ୍ଗ ବୋଳି ଯେ ସୁନ୍ଦରୀ ହେବାକୁ ଆପ୍ରାଣ ଚେଷ୍ଟା କରିଛି । ତାର କଳା ପାଦର ନାଲି ହାଇ-ହିଲ ସୁ ସେ ଖଣ୍ଡମଣ୍ଡଳର ଦୃଷ୍ଟିକୁ ଆକର୍ଷଣ କରୁଥାଏ । ମୁହଁରେ ତାର ଆହ୍ୱାନ ସଙ୍କେତ, ମୁହଁର ବିକୃତ ଭଙ୍ଗିମା ସମଗ୍ର ଜନତାକୁ ବଶୀଭୂତ କରିବାର ଅପଚେଷ୍ଟା ।

ଗୃରୁଆ ଓ ନୀଂ ପଚାରିଲି—ଏମାନେ କିଏରେ ସାମୁଏଲ୍ ଭାଇ ? କଣ ରାଉରକେଲାରେ ରହନ୍ତି ? କଣ କରନ୍ତି ସେମାନେ ?

ଆଗରେ ଯେଉଁ ଯୁବକ ଯୁବତୀଙ୍କୁ ଦେଖୁଛୁ, ସେମାନେ ହେଲେ ସୁଦୂର ଜର୍ମାନ ଦେଶର ଆଗନ୍ତୁକ । ରାଉରକେଲାର ଲୁହା କାରଖାନ ନିର୍ମାଣ ସକାଶେ ଦାୟିତ୍ୱପୂର୍ଣ୍ଣ ଭୂମିକା ତାଙ୍କର । ମୋଟା ଦରମା ପାଆନ୍ତି—ଜୀବନକୁ ହସି ଖେଳି କଟାଇ ଦେବାକୁ ରାସ୍ତା ଖୋଜୁଛନ୍ତି । ଏଇଠି ପ୍ରାୟ ଅଢ଼େଇ ହଜାର ଜର୍ମାନ୍ ରହନ୍ତି । ତାଙ୍କ ମୁହଁରୁ ଖଣ୍ଡ ଖଣ୍ଡିକିଆ ଇଂରାଜୀ ଭାଷା ଶୁଣିଲେ ବେଶ୍ ମଜା ଲାଗେ । ଆମ୍ ବାଗାନ୍ ପଟେର ଚାରି ଓ ପାଞ୍ଚ ନମ୍ବର ସେକ୍ଟର ଭିତରେ ଜର୍ମାନ କଲୋନୀ ! ସେଇଟି ତାଙ୍କର ଗୋଟିଏ ସୋସିଆଲ୍ ସେଣ୍ଟର ବି ରହିଛି । ତାଙ୍କ ପାଇଁ ସୁନ୍ଦର ସୁଇମିଙ୍ଗ୍ ପୁଲ୍, ସ୍ୱତନ୍ତ୍ର

ଚଉଡ଼ଙ୍ଗ୍ରୁମ୍‌ର ବ୍ୟବସ୍ଥା ହୋଇଛି । ସେମାନେ ବାସ୍ତବରେ ଗାଉଲେକେଲର ସମସ୍ତ ବିଭବକୁ ମନଭରି ଉପଭୋଗ କରୁଛନ୍ତି ଓଡ଼ିଶା ଦେଶ ଓ ଓଡ଼ିଆ ଲୋକଙ୍କ ସମ୍ବନ୍ଧରେ ଅତି ଅଦ୍ଭୁତ ଧାରଣା ସେମାନଙ୍କର । ଯେଉଁଠି ଯେତେବେଳେ ସୁବିଧା ସୁଯୋଗ ପାଇଲେ, ଆମ ବ୍ୟକ୍ତିଗତ ଜୀବନର ସମସ୍ତ ଦୁର୍ବଳତାକୁ ପଦାରେ ପକାଇଦେବା ଚେଷ୍ଟାରେ ଅଛନ୍ତି, ଅଥଚ ଜାଣନ୍ତି ନାହିଁ ଯେ ଶତ ଦୁର୍ବଳତା ସତ୍ତ୍ୱେ ଏ ଜାତି ବିଶ୍ୱଦରବାରରେ କେତେ ଆସନର ଅଧିକାରୀ ! କୋଣାର୍କ, ଭୁବନେଶ୍ୱରର ଲଳିତ ଶିଳ୍ପକଳା ଏହି ଓଡ଼ିଆ ଜାତିର କଳ୍ପନା ବିଳାସ ! ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ସିଂହଳ ପ୍ରଭୃତି ଦୂର ଦୂରାନ୍ତ ଦେଶରେ ଏ ଜାତିର ବାଣିଜ୍ୟ ସ୍ମୃତି ରହିଛି—ଏହାର ସଭ୍ୟତା ଅତି ପୁରାକାଳର । ଜର୍ମାନ ଦେଶ ବିସ୍ମୃତିର ଅତଳଗର୍ଭରେ ଲୁପ୍ତ ଥିଲାବେଳେ ଏ ଦେଶ ସମଗ୍ର ଜଗତକୁ ସଭ୍ୟତାର ଆଲୋକ ବିତରଣ କରୁଥିଲା । ସାମୁଏଲ ସାହୁ ଟିକେ ନୀରବ ହେଲେ । ତା ପରେ ଗୁରୁଆ ଓଟାଂଙ୍କୁ ହାତ ବଢ଼ାଇ ସେହି ଅଦ୍ଭୁତ ତରୁଣୀକୁ ନିର୍ଦ୍ଦେଶ କରୁ କରୁ କହିଲେ—ଏହି ଅଧାଦେଶୀ, ଅଧା ସାହାବାଣୀ ଝିଅଟି ହେଉଛି ପରଗୃହିକା । ଆଦିବାସୀ ପରିବାରର ଝିଅ ହୋଇ ଜର୍ମାନ ତରୁଣୀ ରୂପରେ ପ୍ରଭାବିତ ହୋଇଛି । କୌଣସି କଥାର ଉତ୍ତର ଦେବାକୁ ଥିଲେ ଘରେ ମଧ୍ୟ ଇଂରାଜୀର ଅଦ୍ଭୁତ ଶବ୍ଦ ଉଚ୍ଚାରଣ କରୁଛି । 'ଆଫେ'—'ମାରେ' ପରିବର୍ତ୍ତରେ ଇଏସ୍, 'ନୋ' ଅଭ୍ୟାସ କରି କହୁଛି, ଗାଉରକେଲାର ଅଦ୍ଭୁତ ସୃଷ୍ଟି ଏଇ ପରଗୃହିକା, ମୋର ମନେ ହୁଏ ଆଧୁନିକ ଗାଉରକେଲର ଏମାନେ ଜୀବନ୍ତ ପ୍ରତିନିଧି । ସମଗ୍ର ଗାଉରକେଲକୁ ଆକୃଷ୍ଟ କରିବାକୁ ତା'ର ଇଚ୍ଛା । ଲୋକମାନେ ବି ସେମିତି ହୋଇ ଗଲେଣି । ପରଗୃହିକା ବେକର ନକଲି ବାରଣିଆ ସୁନାହାର ଭଲ ମନ ଆଉ ମିଞ୍ଜାସ ସବୁ ତାଙ୍କର ନକଲି । ଏଇ ଝିଅ କୁରେଇ

ଫୁଲର ଗନ୍ଧସ ଗୁଚ୍ଛ ପ୍ଲାଷ୍ଟିକ୍‌ଫୁଲର ପ୍ରଜାପତି ଖୋଜୁଛନ୍ତି । ରାଉରକେଲାରେ ଏହି ବିଚିତ୍ର ନୂଆ ସଭ୍ୟତା ସଙ୍କରାତ୍ମକ ଆକାର ଧାରଣ କଲାଣି । ନା ଖଟା ନା ମିଠା—ସବୁ ମିଶାମିଶି ! ସାନ୍ଧ୍ୟ ଭ୍ରମଣ ପୋଷାକ ଛଳରେ--ଦେଶୀ ଝିଅମାନେ ବେଲବଟମ, ଛୋଟମେଲା ନାଇଲନ୍ ଫେମିଜ ବ୍ୟବହାର କଲେଣି । ଆଖିରେ ଚଷମା ଦେବାର ଢଙ୍ଗ ମଧ୍ୟ ଶିଖିଛନ୍ତି – ରାଉରକେଲାର ନୂଆ ଆଲୋକରେ ସବୁ ଭେଜାଲ ଲାଗୁଛି ।

ଗୁରୁଆ ଓରାଂ ବ୍ୟସ୍ତ ହୋଇ ଉତ୍ତର ଦେଲ—ସେଠିକି ଚାହଁ ସାମୁଏଲ୍ ଭାଇ ! କାନମୁଣ୍ଡା ମୋର ଝିମି ଝିମି କଲାଣି......ଏ ଆଲୋକର ଅବସାନ ହିଁ କାମ୍ୟ । ବରଂ ଆମେ ଅନ୍ଧାର ଘରେ ରହିବା । ଏଇ ଲଙ୍ଗଳ ଚୁଲି, ନକଲି ସଭ୍ୟତା ଆମକୁ ଗ୍ରାସ କରୁ, କିନ୍ତୁ ଆମ ଜାତିର ସଂସ୍କୃତିକୁ ସ୍ପର୍ଶ ନକରୁ ।

ଅଳ୍ପ ଅନ୍ଧାରର ଚୁପିଚୁପିକା ସଡ଼କ ଉପରେ ସାମୁଏଲ ସାହୁ ଓ ଗୁରୁଆ ଓରାଂ ଆରପଟକୁ ଚାହିଁ ଚାଲି ଯାଉଥିଲେ ।

ଗୁରୁଆ ଓରାଂର ଛାତି ଭିତରେ ଲକ୍ଷେ ଭାବନାର ଢେଉ ଲହରାଇ ଉଠୁଥାଏ—

ବର୍ଷଣି ବ୍ୟସ୍ତ ହୋଇ ବାହାର ଝରକାକୁ ଦରଆଉଜା କରି ଅନେଇ ବସିଥାଏ...ମନ ଭିତରେ 'ଟୋକିଆ ଭାବନାର ଅନ୍ତୁଠା ଅସର ଖିଅ ।

ଗୁଲଗା ଫେରି ଆସିବାର ସମୟ ହୋଇ ଗଲାଣି । ଦୁଲଗୀ ମୁହଁସଞ୍ଜକୁ ଫେରି ଆସିବା କଥା —ଆଜି ଭଳି ଡେରି କରିବା ଏଇ ପ୍ରଥମ । ବାହାରେ ଆସିଲ ବେଳକୁ କିଛି ବାଧା ହୋଇନାହିଁ ? ରାଉରକେଲାର ମୋଟର, ଟ୍ରକ ରାସ୍ତାଘାଟକୁ ନିରାପଦ ରଖିନାହିଁ । ଯଦି କିଛି ହୋଇ ଯାଇଥାଏ···

ଗୁରୁଆ ଘରେ ନାହିଁ । ତାର ସଂସାରକୁ ଏତେ ସତର୍କରେ ଆଜି ପର୍ଯ୍ୟନ୍ତ ସେ ଚଳାଇ ନେଇଛି । ଆଉ ବରଷ ଦିଗାହାଙ୍କର କଥା । ଦିନ ଗଣୁ ଗଣୁ ବରଷ ସରିଯିବ । ତାପରେ ଗୁରୁଆ ଫେରି ଆସିଲେ ତାର ସଂସାରକୁ ସଂପି ଦେଇ ସେ ଶାନ୍ତିରେ ନିଶ୍ୱାସ ନେବ । କିନ୍ତୁ କଣ ହେଉଛି ଆଜି !

ବଟଙ୍ଗି ବ୍ୟାକୁଳ ହୋଇ ଚାରିପଟା ଆକାଶକୁ ଚାହିଁଲା । ଧୁଆଁ ଭିତରେ ଅସଂଖ୍ୟ ଆଣବିକର ବ୍ୟବସ୍ଥା ଭଳି ଅସୀମ ଆକାଶରେ ଅଗଣନ ତାରା ଦପଦପ ହୋଇ ଲିଭି ଯାଉଥାନ୍ତି । ଦୂର ଆକାଶର ତାରା, ଅଜଣା ଦେଶର ଆଲୋକ । ସେ ସବୁ ମର୍ତ୍ତ୍ୟ ମାଟିର ହତଭାଗା ମଣିଷର ଅସହାୟ ଅବହେଳା ଦେଖି ଉପହାସ କରୁଥିବେ । ହୁଏତ ଏବେ ନିର୍ମମ ମଣିଷ କୌତୁକବଶ ଭାବିନା ଧରି ବସିଛି । ସେ ଜାଣେନା' ଆୟୁଷ ତାର ଅତି ଅଳ୍ପ, ଅଧିକ ଖଣ୍ଡରେ ସବୁ ମଉଳିଯିବ ।

ବଟଙ୍ଗି ଦେଖିଲା, ରାସ୍ତାଘାଟ ନିସ୍ତବ୍ଧ ହୋଇ ଆସୁଛି – ଅଳ୍ପ ଆଗର ସେହି ଗହଳ ଭିଡ ଆଉ ନାହିଁ । ରାସ୍ତା ଉପରୁ ମୋଟର, ଟ୍ରକ ସଂଖ୍ୟା ବି ଅନେକ କମିଗଲାଣି । ଆଖପାଖ ଘରର ଅନେକରୁ ଅଧିକ 'ଫ୍ଲାଟ'ର କବାଟପଡ଼ି ଆଲୁଅ ଲିଭି ଗଲାଣି । ଦୂରଗଛ ଉପରୁ ଅଜଣା ପକ୍ଷୀ ପର ଝାଡ଼ୁଛି—ପହିଲି ପହରର ଅଳସ ନାଦ ହେବ ଧରି ଏ ଭାଙ୍ଗିଗଲା । ରାଉରକେଲାରେ ରାତି ଘନେଇ ଆସୁଛି —

ବଟଙ୍ଗି ! ରାସ୍ତା ଉପରୁ ଗୁରୁଆ ଓଏଁ ଡାକ ପକାଇଲା—

ବଉଳଙ୍କି ବେଳବାଙ୍କି ରାସ୍ତାଉପରକୁ ଅନାଇଲା—କିଏ ସେ ଡାକିଲା ? ଗହଳ କେଶର ଅରମା ବଣ, ମୁହଁରେ ପ୍ରସ୍ଥ ପ୍ରସ୍ଥ ନାଶଦାଢି । ତାର ଭିତରେ ଉଜଳ ଆଖି ଦିଓଟି ଝଟକି ଉଠୁଛି । ସେହିଟିକୁ ଚିହ୍ନିବା ମୁସ୍କିଲ । ତଥାପି ସେ କଣ୍ଠସ୍ୱରରେ ଅଛି ଅନେକ ଦିନର ଦରଦ, ଅମାପ ସ୍ନେହ, ଅକଳନ ମମତାର ସୁସ୍ପଷ୍ଟ ସ୍ୱାକ୍ଷର ବସିଛି । ସେ କଣ୍ଠରେ ବାଁ । ଆଖିପତା ପୁଣିଥରେ ଥରି ଉଠିଲା । ଦୋଦୋପାଞ୍ଚ ହୋଇ ଡାକିଲା— ଗୃହୁଆ କିରେ !

ହଁ ବଉଳଙ୍କି ! ମୁଁ ଫେରି ଆସିଛି...

ଗୃରୁଆ ଓ ଦୀର୍ଘ ଗୃଶବର୍ଷ ପରେ ଫେରି ଆସିଛି । ତଥାପି ବଉଳଙ୍କି ଆନନ୍ଦ ହୋଇ ପାରିଲା ନାହିଁ । ଗୃପାଗଳାରେ କହିଲା—ଭଲ କଲୁରେ ଗୃରୁଆ ! ଦେଖିବାକୁ ଆଖି ଦିଓଟା ଅନ୍ଧ ହୋଇ ଯାଇଥିଲା । ତୁ ଫେରିଛୁ, ଆଜି ସାଉରକେଲାରେ ସାତ ହୋଇଛି । ତୁ'ଚୁପଚାପ ଘର ଭିତରକୁ ଚାଲିଆ—ତୋତେ ମୁଁ ଲୁଚାଇ ରଖିବ । ଜୀବନଯାକ ଲୁଚାଇ ଥିବ ! ମୁଁ ନିଜେ ଖଟି ତୋ'ମୁହଁରେ ଆଧାର ଦେବ । ତଥାପି ତୁ ଚାହ୍ନା ପଡ଼ନାରେ ଗୃରୁଆ, ଏ ରାଉରକେଲା ଜାଣୁ ତୁ ଜେଲ୍‌ରୁ ଆହୁରି ଫେରିନାହୁଁ ।

ତୁ ଏତେ ଉଠୁଛୁ କାହିଁକି ବଉଳଙ୍କି ?

ତୁ ସେକଥା ବୁଝିବୁ କାହିଁକି ? ମାସେ ନୁହେଁ, ବରଷେ ନୁହେଁ, ଗୃଶବର୍ଷ କାଳ କେତେ ଆଶା କେତେ ଅଭିଳାଷ ନେଇ ବଞ୍ଚିଛି । ପ୍ରତି ସକାଳ, ପ୍ରତି ରାତିକୁ ମୁଁ ଗଣିବସେ । ମୁଁ ଭାବେ ଗୋଟିଏ ଦିନ ନ ଦେଖିଲେ ଯିଏ ପାଗଳ ହେଉଥିଲା—ସେ ପୁଣି ଏତେଦିନ ଯାଏ ଚଳିଲା କେମିତି ? ବାହାର ଲୋକଙ୍କ ପାପ ଆଖି, ବାର ଲୋକଙ୍କର ପରିହାସ ସହି ଦିନକାଟେ ବୋଲି ସେତିକି ଦୁଃଖ ଲାଗେନାହିଁ, ତୋର କଥା ମନେ ପଡ଼ିଲେ ତାହାଠୁ ବଳି ଦୁଃଖ ଲାଗେ । ମୁଁ ଦିନ ଗଣୁଥିଲିରେ ଗୃରୁଆ ! ଆଜିକି ମିଶାଇ ଗୃଶବର୍ଷ

କଟିଗଲା । ଆଉ ବର୍ଷଟିଏ ଅପେକ୍ଷା କରି ପାରିଲୁ ନାହିଁ ? କାଲି ଲୋକେ ଜାଣିବେ, ତୁ ଜେଲଖାନାରୁ ଲୁଚି ପଳାଇ ଆସିଛୁ । ଏକାନ ସେକାନ ହୋଇ ପୁଲିସପାଖକୁ କଥାଯିବ । ଗୋଟିଏ ଘଡ଼ି ଯାଉ ନଥିବ—ତୁ ପୁଣିଥରେ ବନ୍ଦୀ ହେବୁ । ତୁ କାହିଁକି ଆସିଲୁ ! ବଉଳି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା ।

ତୁ ବ୍ୟସ୍ତହନା ବଉଳି ! ମୁଁ ଜେଲଖାନାରୁ ଖଲାସ ହୋଇ ଆସିଛି—ତୁ ମୋତେ ବିଶ୍ୱାସ କରିପାରୁନୁ ? ମୁଁ ଜେଲଖାନାରୁ ଲୁଚିଛପି ପଳାଇ ଆସିଛି ବୋଲି କଳ୍ପନା କରି ପାରିଲୁ ?

ଆଜିକି ମିଶାଇ ଚାରିବର୍ଷ ହେଲା—ପାଞ୍ଚବର୍ଷକୁ ଯେ ଆହୁରି ବର୍ଷେ ବାକି ।

ବର୍ଷେ କଟିଗଲା । ଭଲକାମ ଦେଖି ଏଡ଼େ ବର୍ଷର ସ୍ୱାଧୀନତା ଉପହାର ପାଇଁ ମତେ ଛାଡ଼ିଦେଲେ ବଉଳି, ତୁ ବିଶ୍ୱାସ କର !

ମୁଁ ଯେ କେତେ ଆଶଙ୍କା କରୁଥିଲି । ମାଇପିମନ ମୋର ଭୟରେ ଥରି ପଡ଼ୁଥିଲା । ତୁ କ୍ଷମା ଦେବୁରେ ଗୁରୁଆ ।

ବଉଳି ମୁହଁରେ ଆନନ୍ଦର ଝଲକ ଖେଳିଗଲା । ମଠା ପୀଢ଼କୁ ଟେକିଦେଲା ସେ ଆଗ୍ରହରେ । ପାଣି କଳସୀଏ ଆଣି ଗୁରୁଆର ପାଦ ଧୋଇ ସେ ପାଣିକୁ ମୁହଁରେ ପକାଇବାକୁ ନେଉଛି ଗୁରୁଆ ଓଗାଂ ଆଗ୍ରହରେ ତାର କୋମଳ ବାହୁଲତାକୁ ଟେକିଧରି ଆଲିଙ୍ଗନ କଲା । ବଉଳି ଆନନ୍ଦରେ ଆଖି ବୁଜିଦେଲା ଗୁରୁଆର ଓସାର ଛାତି ଭିତରେ—

ବାହାରେ ଗୁଲବୀର କଣ୍ଠସ୍ୱର ଶୁଣାଗଲା । ସାଥି ଝିଅମାନଙ୍କ ସଙ୍ଗରେ ସେ ଘାଟ ଉଆଡ଼ୁ ଫେରି ଆସୁଥାଏ ।

ବଉଳି ଗୁରୁଆ ଓଗାଂର ଛାତିଭିତରୁ ନିଜକୁ ମୁକ୍ତକଲା ।

ମା!—ମୁଁ ଆଜି ନେକତେ ଖୁସି ଜାଣୁ, ମୋତେ କଣ ଦେବୁ କହିଲୁ ? ରାସ୍ତା ଉପରୁ ଗୁଲବୀ ଚିତ୍କାର କରୁଥାଏ ।

କାହିଁକି କଥା କଣ ?

ମୁଁ କାଲଠୁ ଯାଇ ଧାଇ ଚେଷ୍ଟା ଚାଲିବ । କମାଣାର ବଡ଼ ଅଫିସର କହୁଛି—କାଲିଠୁ ଆଉ ମାଣ୍ଡି ନବୋଧ ଡାକ୍ତରଖାନାକୁ ଯିବ । ତୁ ଖର୍ଚ୍ଚ ନୋହିଲେ—

ବଡ଼ ଏକ ବଡ଼ ଖୁସିରେ ମୁଁ ଖୁସି ହେବ ନାହିଁ—ମୁଁ ଖୁବ୍ ଖୁସି ହେଲା ଗୁଲବୀ । ଆଜିଭଳି ଖୁସି ଦିନଟିଏ ମୋ ଜନମଯାକ ଜୁଟି ନଥିଲା । ବଉଡ଼ ଗୁରୁଆ ମୁଁ ଏକୁ କାହିଁକି କହିଣ ଗୁହୁଁ ମୁହୁଁ ମୁହଁ କି ମୁହଁ ଥାଏ ।

ମୋତେ କଣ ଦେଖୁଛ ମା । ଗୁଲାବୀ ଆଗ୍ରହରେ କହିଲା ।

ତୋ ବାପକୁ ମାଗୁନୁ ?

ବାପା—ସେ କଣ ଫେରି ଆସିଛନ୍ତି ମାଆ ?

ହଁ ହେଲା ଝିଅ । ଅନେକଦିନ ପରେ ମୁଁ ଫେରିଛି—ଗୁରୁଆ ଏବଂ ଝିଅ ପାଖକୁ ଘୁଞ୍ଚିଆସି ତାର ମୁଣ୍ଡ ଉପରେ ଆଶୀର୍ବାଦ ହସ୍ତ ହାତ ବୁଲାଇ ଦେଇ କହିଲା—

ବାପା ! ଗୁଲାବୀ ଆନନ୍ଦରେ ଚିତ୍କାର କରିଉଠିଲା । ମନେ ହେଉଥିଲା ଦଉଡ଼ି ମୁହଁ ଗୁଲବୀ ଏହି କାଳି ସମସ୍ତ ଭିତରେ ଅନେକ ବଦଳି ଯାଇଛି । ସେ ବେଳୁ ବେଳ ପଜେଣ୍ଟ ହୋଇ ଯାଉଛି । ଆଗ୍ରହରେ ବାପର ପାଦଧୂଳି ନେଇ ମୁଣ୍ଡରେ ମାରିଲା ।

ସାମୁଏଲ ସାହୁ ଗୁରୁଆକୁ ଦେଇ ଧାଇଁ ଗୋଡ଼ ଭ୍ରମସେନକୁ ଡାକିବାକୁ ଯାଉଥିଲା, ଅଧବାଟରେ ଦେଖା ହେବାରୁ ଭୀମସେନ୍ ସାଙ୍ଗରେ ଧାଇଁଧାଇଁ ଗୁରୁଆ ଓଡ଼ିଆରେ ବଢ଼ି ପଡ଼ୁଥିଲେ ।

ବାଃରେ ! ଧାମୁଏଲ ସାହୁ ଦୁଆରରୁ ଡାକିଲେ—

କାଏ ସାମୁଏଲ ଭାଇ ! ଭିତରକୁ ଆସନ୍ତୁ, କଏ ଆସିଛି ଦେଖିଲଣି ? ଗୁଲାବୀର ବାପା ଆଜି ମୁକ୍ତିପାଇ ଫେରି ଆସିଛି ଭାଇ ! ଭାଷାଟାର ଆନନ୍ଦର ଆଧିକ୍ୟରେ ପଥବଦ୍ଧ ହେଉଥାଏ ।

ଆନମଣ୍ଡଳେ ସିଖିପତ୍ର ବାହାରୁ ସାଙ୍ଗ ହୋଇ ଆସିଲୁ—
ଗୁରୁଆ ଓରାଂ ହସି ହସି କହିଲା ।

ମନେହେଉଛି ଆଜି ସମସ୍ତଙ୍କ ପକ୍ଷରେ ଗୋଟିଏ ଶୁଭଦିନ ।

ଗୁଲବୀର ବାହାଘର କଥା ଚାଲୁଥିଲା ? ସାମୁଏଲକୁ
ସଙ୍ଗରେ ନେଇ ଆସିଛୁ । ସେଥିପାଇଁ ଅଳ୍ପ ଡେରି ହେଲା । ତୁମ
ବିଚାରର ମତ କଣ କହିଲ ?

ଆମର ମତ କଣ ଅଲଗା ସାମୁଏଲ ଭାଇ ? ତୁମେ
ଯେଉଁଠିକି ପସନ୍ଦ କରୁଛ, ସିଏ କଣ ଠିକ ହେଲା ନାହିଁ ?
ଗୁରୁଆ ଓରାଂ ଓ ବନ୍ଧୁଙ୍କ ଉତ୍ତରଦେଇ ସାରି ମନ ଖୁସିରେ
ହସାହସି ହେଉଥିଲେ । ଗୁଲବୀ ମଥା ନୁଆଁଇ ଘରଭିତରୁ ଗୁଲିଗଲା ।

"କାହିଁର କଏଁକି ଗୁଲବୀ ? ବନ ନାହାକକୁ ସଙ୍ଗରେ ନେଇ
ଦୁଲବୀ ନଫେରୁଥିବା ବସ୍ତି ତେ ଗୁଫାଗଳରେ ପଡ଼ିଲା !

ଆନନ୍ଦ କଥା ଦୁଲବୀ ! ଆମ ସଂସାରର ସବୁକଥା ଆଜି
ଜମା ହୋଇଛନ୍ତି ।

ଜଣ ବାପା କି..........

ହଁ ଲ ଦୁଲବୀ ! ବାପ ବ ନଫେଇଛି । ତାପରେ ବନ ନାହାକକୁ
ଦେଖି ସନ୍ଦେହୀ ମନରେ ପଡ଼ିଲା— ସାଙ୍ଗରେ କେ କଏଁକାଲେ ?
ତାକୁ କି’ କଣ ବାପା ସାମନାକୁ ନେବ ?

ବନ ନାହାକ ଦୁଲବୀ ମୁହଁକୁ ଦେଖି ହସିଲା । ସେଇ ହସର
ଅର୍ଥ ଗୁଲବୀକୁ ସ୍ପଷ୍ଟ ଜଣାପଡ଼ିଲା । ସେ ବି ହସୁଥିଲା ।

ବନ ନାହାକ ଓ ଦୁଲବୀ ଏକ ସମୟରେ ଆସି ବରଙ୍କ ଓ
ଗୁରୁଆ ଓରାଂର ଗୋଡ଼ତଳେ ପଡ଼ିଲେ । ବନ ନାହାକ
ଗୁରୁଆ ମୁହଁକୁ ଚାହିଁ କହିଲା —ମୁଁ ଦୁଲବୀକୁ ବିବାହ କରିବାକୁ
ଚାହେଁ, ତୁମର ଆଶୀର୍ବାଦ ନେବାକୁ ଆସିଛି ।

କଣ ! ବନ ନାହାକ ? ସାମୁଏଲ କଣ୍ଠରେ ବୃଥା ଥିଲା !

ହଁ ସାମୁଏଲ ଭାଇ ! ସର୍ଦ୍ଦାର ନୁହେଁ, ଝାଳପୋଛି ପରିଶ୍ରମ କରି ପେଟ ପୋଷିବାକୁ ସଙ୍କଳ୍ପ କରିଥିବା ବନ ନାହାକ । ଦୁଲଖାର ସାନ୍ନିଧ୍ୟ ଆଖି ମୋର ଖୋଲିଛି । ଆଜଠୁ ଅତୀତକୁ ମୁଁ ଭୁଲିଗଲି । ଅତୀତ ସଙ୍ଗରେ ଅତୀତ ସହିତ ସଂଶ୍ଳିଷ୍ଟ ଥିବା ଦୁଷ୍କର୍ମ ପାଇଁ ମୁଁ ବିଶେଷ ଅନୁତପ୍ତ । ତୁମେ ସାମୁଏଲ ଭାଇ ଆଶିର୍ବାଦ ଦିଅ—ମୁଁ ମୋର ଅତୀତର ଦୁଷ୍କର୍ମ ପାଇଁ ପ୍ରାୟଶ୍ଚିତ୍ତ କରିବି ଜନ୍ମ ଓ ତ୍ୟାଗର ପ୍ରତି ବଦଳ ଦେଇ । ଭାବିଥିଲି ଅତ୍ୟାଚାରର ପ୍ରଧାନ—ଯାହାଯାଙ୍କର ସମ୍ପତ୍ତିକୁ ଲୁଣ୍ଠନ କରି ଅତ୍ୟାଚାରର ପଥରୋଧ କରିବି, କିନ୍ତୁ ତାହା ସହଜ ନୁହେଁ । ମନ ପରିବର୍ତ୍ତନ ନହେଲେ ଯାଏ ଏ କଳାବଜାରିର, ଶୋଷଣ ରୂପୀ ଅତ୍ୟାଚାରର ଶେଷହେବ ନାହିଁ । ମୋତେ ଆଶୀର୍ବାଦ କର ସାମୁଏଲ ଭାଇ ! ମୁଁ ବିଭରକେଲ ଛାଡ଼ି ମୋର ସୁଦୂର ଗାଆଁକୁ ଫେରିଯିବି । ସେଇଠି ସୁଖ ଶାନ୍ତିରେ ରହିବି ।

ମନେ ହେଉଥିଲା ସାମୁଏଲ ସାହୁ ଓ ଗୁରୁଆ ଓରଫ୍ ବନ ନାହାକର ମନ ଦୁଃଖ ପ୍ରତି ସହାନୁଭୂତିଶୀଳ ଥିଲେ । ସାମୁଏଲ ସାହୁ କହିଲେ—କିନ୍ତୁ ତୋର ପଛରେ ଯେ ପୋଲିସ୍‌ର କୋପ ଦୃଷ୍ଟି ଗାଆଁକୁ ଗଲେ କଣ ଶାନ୍ତି ପାଇବୁ ? ବରଂ ପୋଲିସ ପାଖରେ ଆତ୍ମସମର୍ପଣ କରି ସବୁ ଦୋଷ ମାନିଯା' । ଦୋଷ ମାନିଗଲେ ଦଣ୍ଡ କମ୍ ହେବ । ତାପରେ ହୁଏତ ଏ ବିଭରକେଲରେ ରହି ତୋର କଳ୍ପିତ ଭାବନାକୁ ରୂପଦେବୁ । ଗୁଡ଼ାଏ ଅପରାଧ ମୁଣ୍ଡାଇ ଏପାଖ ସେପାଖ ହବା ମୋ ମତରେ ଭଲନୁହେ । ମନର ଉଦ୍‌ବେଗ ସିଏ, ଡେରିକଲେ ବେଶୀ ବଢ଼ିବ । ତା'ଠୁ ବରଂ ପୋଲିସ ଆଗରେ ଦୋଷମାନି ନେଲେ ଦେହ ଆଉ ମନ ନିରୁଦ୍‌ବେଗ ହେବ ?

ହଁରେ ବନ ନାହାକ ! ଦୁଲଖା ତେବେବେଳେ ଖୁସି, ତୁମ ବିବାହ ମଝିରେ ମୁଁ ଛିଡ଼ାହେବ ନାହିଁ । ତୋର ମୁକ୍ତି ଦିନକୁ

ମୁଁ ଅପେକ୍ଷା ରଖିବି । ଦୁଲଶୀକୁ ତୋର ହାତରେ ଟେକିଦେବା ପାଇଁ ଡାକଲେହେଲେ ମୋର ଅମଙ୍ଗ ନାହିଁ ।

ଏକ ନାହାକ ଦୁଲଶୀକୁ ଶେଷଥର ପାଇଁ ଚାହିଁ, ସମସ୍ତଙ୍କଠାରୁ ଆଶୀର୍ବାଦ ନେଇ ଥାନା ଉଦ୍ଦେଶ୍ୟରେ ଚାଲିଗଲା ।

ମୁଁ କଣ ମନ୍ଦ କହୁଛି ଚାରୁଆ ? ତୋର ଯଦି ମତ ନାହିଁ କହିଲେ ଫେରାଇ ଆଣିବି—

ନା– ସେ ଏବେ ଯାଆନ୍ତୁ ! ଦୀର୍ଘ ଦିନ ହେଉପଛକେ ମୁଁ ତାଙ୍କୁ ଅପେକ୍ଷା କରିବି । ତୁମେ ପ୍ରତିବାଦ କରନି ବାପା !

ସାମୁଏଲ ସାହୁ କଥାରେ ମୁଁ ପ୍ରତିବାଦ କରିବି ମାଆ ! ତାଙ୍କ କଣ୍ଠରେ ପରି ଦେବତାର ଇସାରା ମୁଁ ପାଏ······ବିନା ସ୍ୱାର୍ଥରେ କିଏ ଏମିତି ପରପାଇଁ ଖଟୁଛି କହିଲୁ ?

ମୁଁ ଏବେ ଯାଉଛି ଚାରୁଆ ! ତୁମ ପରିବାରର ସମସ୍ତେ ଆଜିଠୁ ଛୁଟିଦିଅ - ଦରକାର ହେଲେ ଦେଖା କରିବି ।

ଛୁଟି ! ଚାରୁଆ ଉତ୍ତର ହସି ହସି କହିଲା — ଏତେଶୀଘ୍ର ଛୁଟି ? ଆଜିଠୁ ପରି ନୂତନ ଅଧ୍ୟାୟର ଆରମ୍ଭ ହେଲା । ମୁକ୍ତି ପାଇଲି କଣ ଖାଲି ଶୋଇ ଶୋଇ ସ୍ୱପ୍ନ ଦେଖିବାକୁ । ଭାବିଥିଲି ରାଉରକେଲାର ଏ ଦୁର୍ଗତି ଦେଖି ପରିବାର ଧରି ବାହାରିଯିବି, କିନ୍ତୁ ତମମାନଙ୍କୁ ପାଖରେ ପାଇ କଣ ମନେ ହେଉଛି ଜାଣ ? ଆଗର ରାଉରକେଲାତ ଆଉ ନାହିଁ, ଖାଲି ବସିଲେ ବି ଫେରିବ ନାହିଁ—ତଥାପି ଆଜିର ରାଉରକେଲା ସଙ୍ଗରେ ନିଜକୁ ମିଶାଇ ନେବାକୁ ପଡ଼ିବ । ପ୍ରଥମେ ଟିକିଏ ଅସୁବିଧା ହେଲେ ହେଉ, ପଛକୁ ଆପେ ଆପେ ସବୁ ସମାଧାନ ହୋଇଯିବ । ଏହି ଦେଶ, ଏଇ ମାଟିର ସନ୍ତାନ ହୋଇ ଯଦି ଆମେ ଏ ନୂତନତା ଦେଖି ବିମୁଖ ହେବା —ଆମ ପାଇଁ ବାହାର ଲୋକ ଆସି କଣ ଏସବୁ ସୁଧାରି ଦେବେ ? ଆମେ ନିଜେ ଅଣ୍ଟା ବାନ୍ଧି ଏହାର ସମାଧାନ କରିବା ।

ଶୋଷଣ ଓ ଅତ୍ୟାଚାରକୁ ପଦେ ପଦେ ପ୍ରତିରୋଧ କରିବା । ସ
ଅନ୍ୟାୟ ଅତ୍ୟାଚାର ପରାସ୍ତ ହେବ ଆଉ ରାଉରକେଲ
ଦୋଷମୁକ୍ତ ହୋଇ ବରଂ ଓଡ଼ିଶାର ପ୍ରତିନିଧିତ୍ୱ କରିବ । ଏହା
ସୁନାମରେ ଚନ୍ଦ୍ର କଳଙ୍କ ନଥିବ କି ସୂର୍ଯ୍ୟର ପ୍ରଖରତା ନଥିବ ।

ସମୁଏଲ ସାହୁ ମନେ ମନେ କୃତାର୍ଥ ହେଉଥିଲ । ଭାବୁଥି
ରାଉରକେଲାର ଏ ରାଜିଟି କେତେ ଶୁଭପ୍ରଦ ସତରେ ! ଗୋଟି
ପରିବାରର ସମସ୍ତ ବାଳେନା ଝିଅକୁ ସହଜ ସରଳ କରିଦେ
ସଙ୍ଗେ ସଙ୍ଗେ ଗୋଟିଏ ସୁନ୍ଦର ଭବିଷ୍ୟତର ସ୍ୱପ୍ନ ଭିତ୍ତି ସ୍ଥା
କରି ପାରିଲ । ସେ ଗଦ୍ ଗଦ୍ ହୋଇ ଉତ୍ତର ଦେଲ—ମଣି
ସଚୋଟ ପଣିଆରେ ସବୁ ସୁଧୁରି ଯିବରେ ଗୁରୁଆ ! ଭଗବାନ
ଆଶୀର୍ବାଦ ଲଭ କରିବାକୁ ଆଜି ଆମେ ଦବୀ ବଡ଼ ଜ କର୍ମଠ
ହେବା ! ଭଗବାନ କ୍ଷୀର ସାଗରରୁ ଆଖି ଖୋଲି ଆମର ଦୁ
ବୁଝିବେ·········

ରାଉରକେଲାର ନିଶବ୍ଦ ରାତିକେ ଳାରେ କେତେ ଜଣ ଅ
କର୍ମତତ୍ପର ହେବାକୁ ଦୃଢ଼ ଶପଥ ନେଉଥିଲେ । ତାଙ୍କର ଶ
ଆଗରେ ଗୋଟିଏ ଜାତିର ଆଶା, ଆକାଂକ୍ଷାର ପ୍ରତିନିଧି କରୁଥି
ରାଉରକେଲ—ନୀରବ ରାଜିର ନିର୍ଜନ ନୀଳ ଆକାଶ ତଳେ
ଖିଲ ଖିଲ ହୋଇ ହସୁଥିଲ ।

ରାଉରକେଲ ଇତିହାସରେ ଏହା ରାତିଟି ଥିଲା ଅତି
ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ।

●